ଓଁ ଜୟଗୁରୁ

ଜୟଗୁରୁ ପ୍ରତିଷ୍ଠାନର ଚତୁର୍ଦ୍ଦଶ ଅବଦାନ

# ହଂସଦୂତ

(ପରମବୈଷ୍ଣବ ଶ୍ରୀଶ୍ରୀରୂପଗୋସ୍ୱାମିବିରଚିତ)

ବିରହ-ବାନ୍ଧବୀ (କବିତା)
ମିଳନ-ମାଧୁରୀ (କାବ୍ୟ)
ରତ୍ନ-ରେଣୁ (ଅନୁବାଦ)
ପଲ୍ଲୀ-ପ୍ରୀତି (କବିତା)
ଋତୁସଂହାର (ଅନୁବାଦ)
ନୀତି-ନିର୍ଝରିଣୀ (ଅନୁବାଦ)
ସତୀର ଶକ୍ତି (କାବ୍ୟ)
ସଟୀକ ଯମକରାଜ ଚଉତିଶା (ଟୀକା ସଂକଳନ)
ଗୀତଗଣିତ (ସଙ୍ଗୀତ)
ଅଞ୍ଜଳି (ବୈଦିକ ଅନୁବାଦ)
ମଣିରତ୍ନମାଳା (ଅନୁବାଦ) ଓ
ତିଳତଣ୍ଡୁଳ (କବିତା) ର

ଲେଖକ

ପରଣୀକବି ଶ୍ରୀ ବିଶ୍ୱନାଥ କର, ବି. ଏ., କୋବିଦ

# ଗୁରୁବନ୍ଦନା

ଗୁରୋ ! ଶିଷ୍ୟସ୍ତେଽହଂ ପରମକୃପୟା ପାଳିତବପୁଃ
ମୟା ଜ୍ଞାନାମ୍ଭୋଧେରୁପଲମିବ ଲବ୍ଧଂ କୃତପଥେ ।
ତ୍ୱଦୀୟାଶୀର୍ବାଦାଦ୍ଧନଜନପଟଶୋଭୈର୍ବିଳସିତା
ସଦାଭୂୟାଦ୍ ଭୃଙ୍ଗୀ ପଦକମଳୟୋସ୍ତେ, ମମ ମତିଃ ।

ତ୍ୱଦ୍‌ଭକ୍ତରଞ୍ଜିତାନ୍ତରସ୍ୟ
ବିଶ୍ୱନାଥସ୍ୟ

---

ମୋର ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ କୃପାସିନ୍ଧୁ କରଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟ—

# ପଞ୍ଚାମୃତମ୍

* ସୁଭାଷିତେନ କାବ୍ୟେନ ଯୁବତୀନାଂ ଚ ଲୀଲୟା
ମନୋ ନ ରମତେ ଯସ୍ୟ ସ ଯୋଗୀ ହ୍ୟଥବା ପଶୁଃ ।

* ତସ୍ମା କବିତସ୍ମା କମ୍ବା ତସ୍ମା ବନିତସ୍ମା ତଥା
ପଦବିନ୍ୟାସମାବେଶେଣ ଯସ୍ମା ନାପହୃତଂ ମନଃ ।

* ସଂସାର ବିଷବୃକ୍ଷସ୍ୟ ଦ୍ୱେ ଫଳେ ହ୍ୟମୃତୋପମେ
ସୁଭାଷିତରସାସ୍ୱାଦଃ ସଙ୍ଗତିଃ ସଜ୍ଜନୈଃ ସହ ।

* ସଙ୍ଗୀତମପି ସାହିତ୍ୟଂ ସରସ୍ୱତ୍ୟାଃ ସ୍ତନଦ୍ୱୟଂ
ଏକମାପାତମଧୁରମନ୍ୟଦାଲୋଚନାମୃତମ୍ ।

* ଦ୍ରାକ୍ଷା ମ୍ଲାନମୁଖୀ ଜାତା ଶର୍କରା ଚାଶ୍ମତାଂ ଗତା
ସୁଭାଷିତରସସ୍ୟାଗ୍ରେ ସୁଧା ଭୀତା ଦିବଂ ଗତା ।

# ଉପହାର

ହୃଦୟର ଗଭୀର ଭକ୍ତି/ଶ୍ରଦ୍ଧା/ସ୍ନେହର
ନିଦର୍ଶନ ସ୍ୱରୂପ
ପୁସ୍ତିକାଟି

ଶ୍ରୀ/ଶ୍ରୀମତୀ ..............................ଙ୍କ
କରକମଳରେ ଅର୍ପଣ କଲି ।

ତା ....................

# ପରମବୈଷ୍ଣବକବି ଶ୍ରୀଶ୍ରୀରୂପଗୋସ୍ୱାମିଙ୍କର
# ସଂକ୍ଷିପ୍ତ ପରିଚୟ

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପରମ ଅନୁଯାୟୀ, ଶ୍ରୀଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଶ୍ରେଷ୍ଠବିଦ୍ୱାନ୍, ପରମଭକ୍ତ, ତ୍ୟାଗୀ, ଉଦାରହୃଦୟ, ବୈଷ୍ଣବ ମୁକୁଟମଣି ଶ୍ରୀଶ୍ରୀ ସନାତନ ଗୋସ୍ୱାମିଙ୍କର ଅନୁଜ, ପରମବୈଷ୍ଣବକବି ଶ୍ରୀଶ୍ରୀରୂପଗୋସ୍ୱାମି କର୍ଣ୍ଣାଟ ଦେଶର ଭରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣ ଶ୍ରୀକୁମାର ଦେବଙ୍କର ଔରସରେ ଶୁଦ୍ଧପୂତା ମହାସ୍ୱସୀ ନାମ୍ନୀ ଶ୍ରୀମତୀ ରେବତୀ ଦେବୀଙ୍କର କୋଳମଣ୍ଡନ କରି ଖ୍ରୀ: ୧୪୮୯ରେ ଜନ୍ମ ଗ୍ରହଣ କରିଥିଲେ । ସେ ହଂସଦୂତ, ଉଦ୍ଧବସନ୍ଦେଶ, ଶ୍ରୀକୃଷ୍ଣାଭିଷେକ, ଶ୍ରୀଶ୍ରୀ ବୃହତ୍‌ଗଣୋଦ୍ଦେଶ ଦୀପିକା, ଶ୍ରୀଶ୍ରୀ ଲଘୁଗଣୋଦ୍ଦେଶ ଦୀପିକା, ଶ୍ରୀସ୍ତବମାଳା, ଶ୍ରୀଲଳିତ ମାଧବ, ଶ୍ରୀଦାନକେଳିକୌମୁଦୀ, ଶ୍ରୀଭକ୍ତିରସାମୃତସିନ୍ଧୁ, ଶ୍ରୀଉଜ୍ଜ୍ୱଳନୀଳମଣି, ଶ୍ରୀପ୍ରଯୁକ୍ତାଖ୍ୟାତଚନ୍ଦ୍ରିକା, ଶ୍ରୀ ମଥୁରାମାହାତ୍ମ୍ୟ, ନାଟକଚନ୍ଦ୍ରିକା, ଶ୍ରୀବିଦଗ୍ଧ-ମାଧବ ନାଟକ, ଲଘୁଭାଗବତାମୃତ, ଶ୍ରୀଗୋବିନ୍ଦବିରୁଦାବଳୀ, ଶ୍ରୀଉପଦେଶାମୃତ ପ୍ରଭୃତି ବହୁ ଉପାଦେୟ, ଭକ୍ତିରସସମନ୍ୱିତ କାବ୍ୟ ଓ ନାଟକମାନ ପ୍ରଣୟନ କରି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରି ଅଛନ୍ତି । ଖ୍ରୀ: ୧୫୬୪ରେ ସେ ମହାପୁରୁଷଙ୍କର ସ୍ୱର୍ଗପ୍ରାପ୍ତି ହୋଇଥିଲା । ଭାରତର ଜଣେ ପ୍ରଖ୍ୟାତ ପଣ୍ଡିତ ରୂପେ ତାଙ୍କର ଖ୍ୟାତି ଚିରକାଳ ବିଦ୍ୟମାନ ରହିବ, ଏହା ନିଃସନ୍ଦେହ ।

---

# ପରମଶୁଭାଶୀଃ

ଶ୍ରୀମାନ୍ ସତ୍ୟାଭିଳାଷି, ପ୍ରଖରତରମତିଃ, ସୌମ୍ୟସାହିତ୍ୟସେବୀ,
ଶ୍ରଦ୍ଧା-ଭକ୍ତି-ପ୍ରମୋଦୀ, ପ୍ରବଚନଚତୁରଃ, ପ୍ରୀତି-ମୈତ୍ରୀ-ବିଳାସୀ ।
ସୌହାର୍ଦ୍ଦ-ସ୍ୱାନ୍ତ-ନାଥଃ,ଶ୍ରୁତିପଥ-ପଥିକୋ ମିଷ୍ଟଭାଷୀ, ମନସ୍ୱୀ,
ହାସ-ନାଟ୍ୟସ୍ୱନେଷୁ ସ ଜୟତୁ କମଳାହର୍ଷଣୋ "ବିଶ୍ୱନାଥଃ" ॥

ଭୂସ୍ୱର୍ଗ କାଶ୍ମୀର-କୁମାରିକାଦି
ନେପାଳ-ଲଙ୍କା ଭ୍ରମଣେ ପ୍ରବୀଣଃ ।
ଭୂଭାରତେଽସ୍ମିନ୍ ବହୁଧାମଦର୍ଶୀ
ସୁଖୀ ଚିରଂ ଜୀବତୁ "ବିଶ୍ୱନାଥଃ" ॥
ଯୋଽସୌ "କୃପାସିନ୍ଧୁ"-କୃପାକଟାକ୍ଷୈଃ
ସିଦ୍ଧଃ ସ୍ୱୟଂସେବକତାମୁପେତ ।
ବିଭିନ୍ନଭାଷା-ବିଲସଦ୍ ବିକାଶାନ୍
ସୁଗୁମ୍ଫିତା ସଦ୍ରଚନା ହି ଯେନ ॥

ପଲ୍ଲୀପ୍ରୀତିଃ ରତ୍ନରେଣୁଃ, ଋତୁସଂହାର ଏବ ଚ ।
ସପ୍ତଶକ୍ତି ବିଚିତ୍ରା ସା, ନୀତିନିର୍ଝରଣୀ ତଥା ॥
ଅନ୍ତଳର୍ଗୀତଗଣିତଂ, ତଳତଣ୍ଡୁଳମେବ ତତ୍ ।
ଟୀକା ସମକରାଜସ୍ୟ, ସାଧ୍ୱୀ ବିରହବାନ୍ଧବୀ ॥
ମଣିମୁକ୍ତା ରତ୍ନମାଳା, ସିଦ୍ଧା ମିଳନ-ମାଧୁରୀ ।
ରୂପଗୋସ୍ୱାମିନା ସୂକ୍ତଂ, ହଂସଦୂତଂ ପ୍ରକାଶିତମ୍ ॥

ଅନନ୍ତ ଚତୁର୍ଦ୍ଦଶୀ
ତା ୯ । ୯ । ୧୯୬୫

ସନ୍ତତଶୁଭଚିନ୍ତକ
ପଣ୍ଡିତ ଶ୍ରୀ ଆନନ୍ଦଚନ୍ଦ୍ର ମିଶ୍ର
କାବ୍ୟତୀର୍ଥ-ନ୍ୟାୟ-ସାଂଖ୍ୟଶାସ୍ତ୍ରୀଣଃ ।

# ପ୍ରାକ୍‌କଥନ

ପରମବୈଷ୍ଣବ, ପଣ୍ଡିତପ୍ରବର, ପ୍ରଥିତଯଶା ଓ ପ୍ରଖ୍ୟାତ ସଂସ୍କୃତ କବି ଶ୍ରୀଶ୍ରୀରୂପଗୋସ୍ୱାମିଙ୍କର "ହଂସଦୂତ" ମୋର ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ କୃପାସିନ୍ଧୁ କରଙ୍କର ସଂଗୃହୀତ ପୁସ୍ତକାବଳୀରୁ ମୁଁ ବହୁବର୍ଷ ପୂର୍ବରୁ ପାଇଥିଲି । ଏହାର ଭାଷା, ଭଙ୍ଗୀ ଓ ଚିନ୍ତାଧାରା ଖୁବ୍ ଉଚ୍ଚକୋଟୀର । ମହାକବି କାଳିଦାସଙ୍କ "ମେଘଦୂତ"ରେ ବିରହୀଯକ୍ଷ ଯେପରି ମେଘକୁ ଦୂତରୂପେ ତା'ର ଅଳକାପୁରସ୍ଥିତା ପ୍ରିୟା ନିକଟକୁ ପଠାଇଥିଲା, ସେହିପରି କୃଷ୍ଣ ବ୍ରଜପୁରରୁ ଅକ୍ରୂର ସହିତ ମଧୁପୁର ଯାତ୍ରା କଲାରୁ ଶ୍ରୀରାଧାଙ୍କର କୃଷ୍ଣ ବିରହଜନିତ ଦୁଃଖ ଲାଘବ ନିମିତ୍ତ ଲଳିତା ହଂସକୁ ଦୂତରୂପେ ପଠାଇବାରେହିଁ ଏହି କାବ୍ୟର ଉତ୍କର୍ଷ ପ୍ରତିପାଦିତ ହୋଇଅଛି ।

ଏହାର ଶ୍ଳୋକମାନ ଭାବଦ୍ୟୋତକ, ଆବେଗପୂର୍ଣ୍ଣ, ମର୍ମସ୍ପର୍ଶୀ ଓ ଭକ୍ତିରସରସାଣିତ । ସାହିତ୍ୟରସିକ ସୁଧୀମାନଙ୍କର ଚିତ୍ତବିନୋଦନାର୍ଥେ ମୁଁ ଏହାକୁ ଓଡ଼ିଆ ଭାଷାରେ ପଦ୍ୟାନୁବାଦ କରିବା ନିମିତ୍ତ ପ୍ରୟାସ କଲି । ଏହାକୁ ପାଠକରି ସୁଧୀବର୍ଗ ଆନନ୍ଦ ଉପଭୋଗ କଲେ ମୁଁ ଶ୍ରମ ସାର୍ଥକ ମନେ କରିବି ।

ପଣ୍ଡିତ ଶ୍ରୀଆନନ୍ଦଚନ୍ଦ୍ର ମିଶ୍ର, କାବ୍ୟତୀର୍ଥ, ନ୍ୟାୟ-ସାଂଖ୍ୟ-ଶାସ୍ତ୍ରୀ, ଓ ଖ୍ରୀଷ୍ଟ କଲେଜର ଅଧ୍ୟାପକ ଶ୍ରୀଗଙ୍ଗାଧର ଷଡ଼ଙ୍ଗୀ ଏମ୍. ଏ. କେତେକ ସନ୍ଦେହ ମୋଚନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରି ଅଛନ୍ତି । ଉଦୀୟମାନ ଶିଳ୍ପୀ-ବନ୍ଧୁ ଶ୍ରୀଉଦନନାଥ ପାଠୀ ପ୍ରଚ୍ଛଦପଟ ଛବିଟି ଅଙ୍କନ କରି ମୋତେ ଆପ୍ୟାୟିତ କରିଛନ୍ତି ।

ବନସ୍ପାବନତ
ଦରଦୀକବି

# ହଂସବୃତ୍ତ

ପଟ୍ଟବସନ ନନ୍ଦଇ ଯା'ର
ଦଳାଦ୍ଧରିତାଳ କାନ୍ତି,
ସୁନ୍ଦର ପାଦପଦ୍ମ ଜଗାଏ
ମନ୍ଦାରମାଳ ଭ୍ରାନ୍ତି ।
ସସ୍ମିତ ବୃନ୍ଦ ମୁଖମଣ୍ଡଳ
ଶ୍ୟାମକଳତମାଳ ଅଙ୍ଗ ,
ଅନ୍ତରେ ମମ ବିରାଜ ଗୋ
ସେହି ଚିନ୍ମୟ ଶିଶ୍ରୀରଙ୍ଗ । ୧ ।

---

ଶ୍ରୀରଙ୍ଗ —ଭଗବାନ

ଛୋଡ଼ିଗଲେ ଯେବେ ନନ୍ଦସଦନ ,
ବରଜଯୁବତୀ ଚିତ୍ତ-ନନ୍ଦନ ,
ଦୂତ ଅକ୍ରୂର ରଥେ,
ମଥୁରା ନଗରୀ ପଥେ ;
ବିରହ-ବିଧୁରା ରାଧିକା ଅଗାଧ-ଚିନ୍ତା-ସଲିଳେ ମଗ୍ନା
କୃଷ୍ଣ-ପ୍ରଣୟ-ଲଗ୍ନା । ୨ ।

ମଦନ-ଚାପୁଁ ତା କଦନ ମୁକ୍ତି ଆଶେ,
ସଦନ ବରଜି ଆଳଏ ଯମୁନା ପାଶେ,
ସଙ୍ଗତେ ନେଲେ ରାଧା,
ଉପଶମିବାକୁ ଅନ୍ତ ତାହାର କୃଷ୍ଣ-ବିରହ-ବାଧା;
କିନ୍ତୁ ସେ କେଳିକୁଞ୍ଜେ ହରିଙ୍କ ମିଳନ ଛବି,
ମୂର୍ଚ୍ଛିତା ହାୟ ! ବେଦନା ପୁଞ୍ଜି ମରମେ ଲଭି । ୩ ।

ସ୍ପନ୍ଦନହୀନ ରାଧା ଅଚେତନେ,
କମଳପତ୍ରେ ଆବରି ସଯତନେ,
ସଜନୀ ଦୁଃଖ ଭରି,
ବେଢ଼ି ଚୌଦିଗେ ମୁଞ୍ଚିଲେ ଯେବେ
ଅଶ୍ରୁ ସକଳ ଆଳି,
ଅର୍କତନୟା କଲ୍ଲୋଳେ ଗଲା ଭରି । ୪ ।

---

ଅର୍କତନୟା—ଯମୁନା ।

ବିରହବାଧା ଲଭିଣ ରାଧା ଲଳିତା ଅଙ୍କଗତେ,
ମୂର୍ଚ୍ଛା ଗଲେ କି ସତେ !
ନଳିନୀ-ଦଳେ ଯମୁନା ଜଳେ ତିନ୍ତା'ଇ ଆଳିକୁଳ
ବିଞ୍ଚିଲେ ହୋଇ ଚୂଳ;
ଅଙ୍ଗବେଦନା ଉପଶମନର ଆଶେ,
ବିଳେକ ଊର୍ଦ୍ଧ୍ୱ ଶ୍ୱାସେ-
କଣ୍ଠେ ତାହାର ଲଭେ,
ଶଙ୍କିତମନେ ବଂଶଲେ କାଳ ହର୍ଷ-ମଧୁର-ରବେ । ୫ ।

ବହଳ କମଳପତ୍ରେ ଶଯ୍ୟା ରଚନ କରି,
ଶୁଆଇଦେଲେ ସେ ବିରହିଣୀ ରାଧା ହସ୍ତ ଧରି;
ଜଳ ଆହରଣେ ଅର୍କତନୟା ପାଶେ,
ଚଳିଲ ସଜନୀ ଲଳିତା ଊର୍ଦ୍ଧ୍ୱ ଶ୍ୱାସେ;
ମନ୍ଦ୍ର-ମନ୍ଥର-ସ୍ୱନେ,
କମ୍ପାଇ ଅଟବନେ;
ଧବଳ ହଂସଟିଏ,
ସମ୍ମୁଖେ ଦେଖାଦିଏ । ୬ ।

ହଂସେ ବିଲୋକି ମନ୍ଦଗମନେ ଲଳିତା ଆଳି,
ଉଲ୍ଲାସ ଲଭି ସମ୍ମୁଖେ ଗଲେ ତାହାର ଚାଲି;
ଉଦ୍‌ବେଗଭରେ ଚିନ୍ତିଲେ ମନେ ମନେ,
ଭାଗ୍ୟେ ମିଳିଲା ଶ୍ରେଷ୍ଠଦୂତ ଏ ଜଣେ,

ବାର୍ତ୍ତାବହ ଏ ହଂସେ ପେଷିବା କଂସ ମଥୁରା ପୁର,
କୃଷ୍ଣ ସମୀପେ ରାଧାର ବିରହ ଦୁଃଖ ହୋଇବ ଦୂର । ୭ ।

ପ୍ରଣୟୁ ରେଷ ବନ୍ଧି ମାନସ,
ମଙ୍ଗଳ ପାଶ ହୋଇଲେ ବଶ,
ଲଭିଣ ତୋଷ ନୋହେ ସେ ଦୋଷ,
ସନ୍ଦେଶ ଦେଲେ କଂସରିପୁ ଶ୍ରୀକୃଷ୍ଣେ;
ରାଧିକା ଈଶ- ଭକତି ବଶ,
ମାନବ ପାଶ ଅବିଶ୍ୱାସ,
କାହାରେ ଲେଶ ଥାଏ କି ଭ୍ରଷ ? ,
ହଂସେ ବିନୟୀ ହୋଇଲେକ ଅତିତୃଷ୍ଣେ । ୮ ।

ବାସ ତୋ ପୂତଜଳେ,
ତୋଷ ନଳମାଦଳେ,
ବିମଳ-ହୃଦୟୁ ତୁ ସାରସ,
ମୁଁ ଯେ ଅବଳାଜନ,
ଗଲି ତୋରେ ଶରଣ,
ମାନସ ହୋଇଛି ମୋ ବିରସ;
ମହତ ଜନଠାରେ,
ଯାଚନା କଲେ ବାରେ,
ବିଫଳ କେବେ ହେଲେ ନୁହଇ,
ତେଣୁ ତୋ ପାଶେ ପ୍ରାର୍ଥୀ ହୁଅଇ ।୯।

ସ୍ଥିର

ବିସ୍ମରି ହରି ଆମକୁ ତେଜିଲେ ଘର୍ଷ ଦିବସ ଯାମିନୀ,
ବିରହ-ଅଗ୍ନି-ତାପେ ବିଦଗ୍ଧ ସର୍ବ ଏ ଗୋପକାମିନୀ,
ହର୍ଷେ ରହିଲେ ମଥୁରା ନଗ୍ରେ,
ହଂସ ରେ ତେଣୁ ଚଳ ତୁ ବ୍ୟଗ୍ରେ,
ହୋଇଣ ବାର୍ତ୍ତାବହ,
କୃଷ୍ଣ ପୁରତେ କହ । ୧୦ ।

ମଙ୍ଗଳ ହେଉ ମାର୍ଗଗମନ ତବ,
ବିଘ୍ନବିହୀନ ଯାତ୍ରା ଏ ଅଭିନବ;
ହର୍ଷ ବହିଣ ମନେ,
ହଂସ ! ଚଳ ତୁ କ୍ଷଣେ;
ଦର୍ଶନେ ତୋର ଗତି,
ହୋଇ ଉତ୍ସୁକ-ମତି;
ଗୋପଶିଶୁଗଣ ଊର୍ଦ୍ଧ୍ୱନେତ୍ରେ ରହି,
ବିଲୋକିବେ ତୋତେ କୌତୁକଭାବ ବହି । ୧୧ ।

କିଶୋରଶେଖର ଗୋପୀମନଚୋର କଂସ ଆଦେଶ ପାଳି,
ମଧୁପୁର ଗଲେ ଚାଲି;
ହାୟ ! ଅକ୍ରୂର ରଥେ,
ନିଖିଳ ବିଶ୍ୱବିଖ୍ୟାତ ଜନପଥେ;
ଚଳ ସେ ମାର୍ଗେ ସଜ୍ଜନବର ତୁ ରେ,
ଦୂତରୂପେ ଆଜ ମିଳ ସେ କଂସପୁରେ । ୧୨ ।

## ଗ୍ରୀଷ୍ମ

ପାଣ୍ଡୁର ବଦନେ ଗଣ୍ଡ ଗଳିତ-ବାଷ୍ପଧାରାର ଯୋଗେ,
ଚଣ୍ଡ ମଦନ ଦଣ୍ଡ ହରଣଚେଷ୍ଟା ସତତ ଉଦ୍ୱେଗେ,
କୃଷ୍ଣଚରଣ ସଙ୍ଗ-ପ୍ରଣୟିଜନେ,
ହଂସ ରେ ! ତୋର ନିଷ୍ଠୁର ଥିବ ମନେ;
ଚଳ ଚଞ୍ଚଳ ତୁରେ,
କଂସ ମଥୁରା ପୁରେ । ୧୩ ।

ଜମ୍ବୁ-ଶ୍ୟାମଳ ଅର୍କତନୟା ମଧୁର ନୀରେ,
ପିଇ ତୁ ଧୀରେ;
ଚନ୍ଦ୍ରକିରଣ ଧବଳକୋମଳ ପଦ୍ମନାଳେ,
ଭକ୍ଷି ବାରେ;
ବିଶ୍ରାମି ଛାୟା ବକୁଳ-ବୃକ୍ଷପରେ,
ଦଣ୍ଡକ ସୁଖଭରେ;
ହର୍ଷମାନସେ ଯାତ୍ରା କରିଚ ଅଗ୍ରେ,
ଚଳ ତୁ ମଥୁରା ନଗ୍ରେ । ୧୪ ।

ଅକ୍ରୂର ଯେବେ କୃଷ୍ଣେ ବସାଇ ରଥେ,
ବାହିଲା ମଥୁରା ପଥେ;
ଉଠେ ଚଳଟି ବ୍ରଜଅଙ୍ଗନା ଅଶ୍ରୁପୂରିତ ନୟନେ,
ଅନୁଗମିଲେ ଯେ ଅୟନେ;
ଅବଲମ୍ବି ସେ ମାର୍ଗ ଆଜ,
ଚଳ ଚଞ୍ଚଳେ ହଂସରାଜ !

ସାର୍ଥକ ହେଉ ନାମ,
ପରମହଂସ ଧାମ । ୧୫ ।

ନିର୍ଜନେ ବନେ ନୀପବୃକ୍ଷର ପରେ,
କୃଷ୍ଣ ପ୍ରଣୟ ଭରେ;
ପିନ୍ଧା ବସନ ଆମ୍ଭର ଦେଲେ ରଖି,
ଚମକିତା ସବୁ ସଖୀ;
ସେହି କଦମ୍ବ ସୁଶ୍ରୀ ଘଞ୍ଚ ଆଜ,
ନ ଭେଦେ ସୂର୍ଯ୍ୟ ତୀକ୍ଷ୍ଣ ରଶ୍ମି ରାଜ;
ଗମନମାର୍ଗେ ତୋର,
ହରିବ କ୍ଲାନ୍ତି ଘୋର । ୧୬ ।

ସେହି କଦମ୍ବ ବୃକ୍ଷ ତଳେ,
କାନ୍ତେ ଜାବୋଡ଼ି ହର୍ଷଭରେ;
ଶ୍ୟାମଳଗାତ୍ରୀ ଶିଖିନୀ ପକ୍ଷ ସହିତେ ସ୍ୱର୍ଣ୍ଣବାସ,
ମନ୍ଦ୍ରମଧୁର ଶବ୍ଦ ବରଷି ଥାଏ ସେ କାନ୍ତ ପାଶ;
କଣ୍ଠେ ବାଜେ ସେ ଶବ୍ଦ,
ଦଣ୍ଡେ କରଏ ସ୍ତବ୍ଧ;
ଜଗାଏ ମାନସେ କୃଷ୍ଣ ବଂଶୀ ତାନ,
ଉଦ୍‌ବେଗ କରେ ବିରହ-ବିଧୁର-ପ୍ରାଣ । ୧୭ ।

ଭାବ ଗଦ୍‌ଗଦ ଚିତ୍ତେ,
ଗୋପ ଅଙ୍ଗନା ନିତ୍ୟେ;

ସାତ

ରାସକେଳି ରତ ରସିକ କୃଷ୍ଣ ସଙ୍ଗେ,
ଦଣ୍ଡନମିତ ହତେ ଯହିଁ ନାନାରଙ୍ଗେ;
ମାନସ ପଟଳେ ଚିତ୍ର ଅତୀତ କଥା;
କସ୍ତୁ ଶ୍ୱାକଣ ମିଳେ ଯହିଁ ସର୍ବଥା;
ହଲ୍ଲୀଶକ ସେ ନୃତ୍ୟେ ମତ୍ତ ମଲ୍ଲୀବନେ,
କୃଷ୍ଣର ତୁଲେ ବରଜଯୁବତୀ ସଂଗୋପନେ । ୧୮ ।

କୁଞ୍ଜସମୀପେ ନଆଳ ଲତିକା ବେଷ୍ଟିତ କେଳିପୁର,
ଦର୍ଶନେ ତାହା ହଂସ ତୋହର ଦୁଃଖ ହେବରେ ଦୂର;
ମୁଗ୍ଧ ହେବ ତୋ ଚିତ୍ତଗହନ,
କ୍ଷିପ୍ରଗତିରେ ଚଳ ତୁ ବହନ;
କୃଷ୍ଣ ସମୀପେ ଗୋପ ଅଙ୍ଗନା ବାର୍ତ୍ତା ଦିଅରେ ବେଗେ,
କହିଁକୁରେ ଉଦ୍‌ବେଗେ;
ହଂସରେ ଏବେ କଂସ ବଇରୀ କୃଷ୍ଣ ନଇଲେ ପାଶ,
ବିଚ୍ଛେଦ ଲଭି ବ୍ରଜଅଙ୍ଗନା ଅଚିରେ ହେବୁ ରେ ନାଶ ।୧୯।

ଦର୍ଶନେ କାମକେଳି କୌତୁକ ଥଳେ;
କାଳବଳୟେ ଦୁଃଖ ଆମର ବଢ଼ିବ ଚିତ୍ତ ତଳେ;
ତଥାପି ହଂସ ! ଦେଖ ଅନ୍ତର ଭରି,
ମୁଗ୍ଧପରାଣେ ପ୍ରଣୟ ରଚିଲେ ଗୋପୀ ତୁଲେ ଯହିଁ ହରି;
ନେତ୍ରେ ଯେବେ ତୁ ନ ଦେଖୁ ସେ ମଧୁ ଚିହ୍ନମାନ,
ବ୍ୟର୍ଥ ହେବ ତୋ ସୁଗୁଣ-ଗରିମା ହଂସ ! ଜାଣ ।୨୦।

କର୍ଣ୍ଣେ ବାଜି ସେ ବଂଶୀ ନିନାଦ ଥରେ,
ଗୁପ୍ତ ପ୍ରଣୟେ ମତ୍ତ ହୋଇଲେ ଗୋପ ଅଙ୍ଗନା ଥରେ;
ମୂକ ସାକ୍ଷୀ ତା' ଲତାବେଷ୍ଟିତ ଗୋବର୍ଦ୍ଧନ ଯେ ଗିରି,
ଦର୍ଶନେ ତନ୍ୱୀ ପ୍ରଣୟୀ କୃଷ୍ଣ ଅଙ୍କ-ଶଯ୍ୟା ଶିରି;
ହର୍ଷିତ ହେବ ମତି,
କରି ଚଞ୍ଚଳ ଗତି । ୨୧ ।

ଅଦ୍ରି ପତନେ ଜନ, ଜନପଦ ଧ୍ୱଂସ ହେବାର ଜାଣି,
ଇନ୍ଦ୍ର କୁପିତେ ପ୍ରହାରି ବଜ୍ର ପକ୍ଷ ଦେଲେକ ହାଣି;
ଧ୍ୱଂସିବାକୁ ସେ ବୃନ୍ଦାବନ,
ଇନ୍ଦ୍ରର ଯେବେ ବଳିଲା ମନ;
କୃଷ୍ଣ ଧରିଲେ ହସ୍ତେ ଅଦ୍ରି, ଲଜ୍ଜିତ ସୁରପତି,
ପର୍ବତ ସେହି ଗୋବର୍ଦ୍ଧନ ଯେ ବିଖ୍ୟାତ ତେଣୁ ଅତି ।୨୨।

ଚପଳ ଶବରୀବୃନ୍ଦ ବିରହ ଦୁଃଖେ ସୁମରି କୃଷ୍ଣେ,
ଗୋବର୍ଦ୍ଧନର ତମାଳକୁଂଜେ ମାର୍ଗ ଖୁଞ୍ଜିଁ ସନ୍ତୁଷ୍ଟେ;
ଅର୍କତନୟା କଲ୍ଲୋଳରେ,
ଶୀତଳ ହେବ ତୋ ପକ୍ଷ ଥରେ,
ସୁଶୀତଳ ତୋର ପକ୍ଷପବନ ବାଜି
ଉଞ୍ଛିବ ଗୋପୀ ହୃଦସନ୍ତାପରାଜି । ୨୩ ।

ଦେଖିବୁ ହଂସ ! କୃଷ୍ଣର କେଳିବନ,
ଯହିଁ କଦମ୍ବ ବୃକ୍ଷ ବିରାଜେ ସଂଖ୍ୟାରେ ଅଗଣନ;
ପୁଲକିତବପୁ କୃଷ୍ଣ ଯେସନ ଦର୍ପକ-ଶର-ଘାତେ,
ନୀପସୁମନର ଶୋଭା ଧରେ ସେହି ମତେ;
ନେତ୍ରେ ଯେବେ ରେ ନ ଦେଖୁ ସେ ଶୋଭା ଆହା,
ବ୍ୟର୍ଥ ହେବ ତୋ ପ୍ରଣୟରସିକ କୃଷ୍ଣଭକ୍ତ ଯାହା ।୨୪।

ମୃତ୍ୟୁ ଲଭୁଁ ସେ ଅରିଷ୍ଟାସୁର ବୃନ୍ଦାବନର ଶୋଭା,
ହଂସରେ ଦେଖ ମର୍ମ ପରଶୀ ମନୋଜ୍ଞ ମନଲୋଭା;
ଶରଦ ବାରିଦ ଧବଳବର୍ଣ୍ଣ ନିରେଖି ଯକ୍ଷଚର,
କୈଳାସ ମଣି ଶିଖର ଊର୍ଦ୍ଧ୍ୱେ ଆରୋହଣ ତତ୍ପର;
ଦର୍ଶନେ ଯାର ଭ୍ରମ ଜାତ ହେଲା ଧନଦ ଭୃତ୍ୟ ମନେ,
ହଂସ ! ଦେଖ ରେ କ୍ଷଣେ । ୨୫ ।

ହଂସ ରେ ଚଳ ତୁରିତେ କଂସପୁର,
କୃଷ୍ଣ ବିରହ ସନ୍ତାପ ହେଉ ଦୂର;
ଯେ ଦିନୁ କୃଷ୍ଣ ଗୋପପୁରୁ ଗଲେ ଚାଲି,
ଦର୍ପକ ବାଣେ ପୀଡ଼ିତା ସକଳ ଆଳି;
କଳରବ ତୋର କର୍ଣ୍ଣେ ଶୁଣି,
କୃଷ୍ଣ ନୂପୁର ଶବ୍ଦ ଗୁଣି;
ମୂର୍ଚ୍ଛିତା ହେବେ ବ୍ରଜ ଅଙ୍ଗନା ଯେଣୁ,
ଚଳ ଚଞ୍ଚଳ ତେଣୁ । ୨୬ ।

ବିଶ୍ରାମ ନେବ ଭାଣ୍ଡୀର ବନେ ତହିଁ,
ବ୍ୟାପ୍ତ ଗଗନେ ଶାଖା ଚୌଦିଗେ ଯହିଁ;
ପଞ୍ଚ କୃଷ୍ଣପତ୍ର ବହୁଳ ସୁନ୍ଦର ତା'ର ଶୋଭା,
ଦୃଶ୍ୟ ସେ ମନଲୋଭା;
ଶୁକ୍ଳବର୍ଣ୍ଣ ଭ୍ରମର ସଙ୍ଗ ଲଭି,
ଶଙ୍ଖ ଚକ୍ର ସଂଗମ ସମ ଦିଶିବ ସେ ମଧୁ ଛବି । ୧୭ ।

ବ୍ରହ୍ମା ନୟନୁଁ ବିଗଳିତ ହୋଇଁ ସ୍ୱଚ୍ଛ ପ୍ରଣୟ-ବନ,
ଜନ୍ମିଛି ତହିଁ ଗୁଳ୍ମଲତିକା ସଂଖ୍ୟାରେ ଅଗଣନ;
କ୍ଷିପ୍ରଗତିରେ ଚଳ ତୁ ଇଷ୍ଟ ସେବି,
ମୁଗ୍ଧ ହେବେ ତୋ ଦର୍ଶନେ ବନଦେବୀ;
ମରାଳବର ! ତୁ ବ୍ରହ୍ମାବାହନ ଯେଣୁ,
ଦର୍ଶନେ ତୋର ବିଧି ଆଗମନ ସବେ ମଣିବେ ତେଣୁ ।୧୮।

ମୁଞ୍ଚିଲେ ଯେବେ ଅଶ୍ରୁ ନୟନୁ ବରଜବାଳୀ,
କୃଷ୍ଣ ଗମନ ଦୁଃଖ ମାନସେ ସତତ ଭାଳି;
ଦର୍ଶନ ଆସେ ମୁଗ୍ଧନୟନେ ଯମୁନା ତୀରେ,
ହର୍ଷବିହ୍ୱଳେ ଦଗ୍ଧପରାଣେ ଚଳିଲେ ଧୀରେ;
ପିଚ୍ଛିଳ ଆଜି ଅଶ୍ରୁ ପତନେ ସେ ରାଜପଥ,
ସ୍ଖଳିତ ଚରଣ କମ୍ପିତ ଉର ମର୍ମାହତ । ୧୯ ।

---

ଭାଣ୍ଡୀର—ବୃକ୍ଷବିଶେଷ, ପ୍ରଣୟବନ—ପ୍ରେମାଶ୍ରୁ, ବିଧି-ବ୍ରହ୍ମା

କୌତୁକ-ବଶେ ମତ୍ତମାଧବ କାଳୟୁ ଶିରେ,
ନର୍ତ୍ତନେ ଅଳ୍ପ ମସ୍ତକମଣି ପତନେ ଧୀରେ;
ଧୂମବର୍ଣ୍ଣ ଧରିଲା ସେ ହ୍ରଦ ଅମ୍ବୁରାଶି,
ତୀରପ୍ରାନ୍ତେ ତା ପୁଷ୍ପିତ ନୀପ ମତ୍ତହାସୀ;
ପୂଣ୍ୟ ମଧୁର ସେ ଜଳପାନେ,
ଧନ୍ୟ ମଣିବୁ ତୋହର ପ୍ରାଣେ ।୩୦।

ଅର୍କତନୟା ପ୍ରାନ୍ତେ ବିରାଜେ ଦେଖ ସେ ବୃନ୍ଦାବନୀ,
ସୌରଭମୟ ତୁଳସୀବୃକ୍ଷ ପୁଣ୍ୟରାଶୀ ଅଛି;
ଦନୁଜବଇରୀ ବିରହ ଦୁଃଖେ ବାଳୀ,
ଦଗ୍ଧ ପରାଣେ ହେଲେ ଯେବେ ବିଆକୁଳ;
ନିର୍ମଳ ମନେ ବୃନ୍ଦାବନୀର ପଦେ,
ଆଶ୍ରୟ ନେଲେ ଭକ୍ତର ଗଦଗଦେ । ୩୧ ।

ଲଙ୍ଘି ତୁରିତ ଏକାଦଶବନ ଗୁଞ୍ଜିତ କେକାରବେ,
ଆମ୍ରଗହଳ ବ୍ରଜ ମଧୁବନେ ହଂସ ! ଚଳ ରେ ଲବେ;
ନିର୍ମଳ ଯା'ର କୀର୍ତ୍ତି ବିଶାଳ ଗଗନେ,
ଶୁଭ୍ର କରଇ ଗଗନବକ୍ଷ ସଘନେ;
ସେହି ସେ ଯାଦବ ନଗ୍ରେ;
ହଂସ ଚଳ ରେ ବ୍ୟଗ୍ରେ । ୩୨ ।

କୈଳାସ ସମ ଦୃଶ୍ୟ ବହୁଳ   ଉନ୍ନତ ନିକେତନ
ସ୍ତମ୍ଭ ଶୋଭିତ ସଦ୍ମସକଳ   ପୁଷ୍ପିତ ଉପବନ,

---

ଦନୁଜବଇରୀ—କୃଷ୍ଣ, ନିକେତନ—ଗୃହ, ସଦ୍ମ—ଗୃହ ।

ଅକତନୟା ଘଜେ ମଧୁପୁରୀ ପାଶେ,
ପାନକର ତାର ମଧୁ ନୀର ଉଲ୍ଲାସେ;
ହଂସ ରେ ! ବାରେ ଦର୍ଶନେ ମଧୁପୁର,
ହର୍ଷ ଲଭିବୁ ଦୁଃଖ ହୋଇବ ଦୂର ।୩୩।

ଶଙ୍କର ଅନୁଚର ସେ ବୃଷଭ ଭକ୍ଷଇ ଯହିଁ ତୃଣ,
ବ୍ରହ୍ମାବାହନ ମରାଳ ଭକ୍ଷେ ପଦ୍ମନାଳିକା ପୁଣ;
କାର୍ତ୍ତିକେୟର ମୟୂର ଭୁଞ୍ଜେ ସର୍ପ ସକଳ ଯହିଁ,
ଇନ୍ଦ୍ରବାହନ ଐରାବତ ଯେ ଶଲ୍ଲକୀ ଖାଏ ତହିଁ । ୩୪ ।

ସ୍ଖଳିତ ବସନା ସଂଜ୍ଞା ବର୍ଜ୍ଜନା ରାଧା,
କଣ୍ଠେ ଜୀବନ ଲଭି ଏ ବିରହ ବାଧା;
ଛିନ୍ନ ହୋଇଛି କଣ୍ଠୁ ମୁକ୍ତାମାଳା,
କୃଷ୍ଣ ସୁଗୁଣ କୀର୍ତ୍ତନ ଶୁଣି ବାଳା;
ଉନ୍ମାଦିନୀ ସେ ହୁଅଇ କ୍ଷଣକୁ କ୍ଷଣ,
ଦର୍ଶନେ ଦଶା, ହସିବେ କୁଳଟାଗଣ । ୩୫ ।

ଉନ୍ମାଦିନୀ ସେ ସୁନ୍ଦରୀ ରାଧା ଥରେ ଭାବ ଗଦ୍‌ଗଦେ,
ଲକ୍ଷାରସରେ ରଞ୍ଜିତ କଲା ତାହାର ଦକ୍ଷ ପଦେ,
ବିଭ୍ରମେ ବାମଚରଣ ରହିଛି ଖାଲି,
ସଂଭ୍ରମବଶେ ଉପହାସ କଲେ ଆଲି;
କୃଷ୍ଣ ପ୍ରଣୟେ ଉନ୍ମାଦିନୀ ସେ ନାରୀ,
ଗୋପବନିତାର ନିନ୍ଦା ଲଭଇ ଭାରି । ୩୬ ।

---

ଶଲ୍ଲକୀ—ଶାଲୁକୀ ଶାଗ, ପାଣି କେନ୍ଦୁରୀ ।

ଦେଖ ସମ୍ମୁଖେ କଂସ ବିଜୟୀ କୃଷ୍ଣ ଆମ,
ଅଶୋକ ପୁଷ୍ପେ ମଣ୍ଡିତ ହୋଇ ପୂର୍ଣ୍ଣକାମ;
ଦର୍ଶନେ ତାହା ପୁର ନରନାରୀ,
ସସ୍ମିତ ମୁଖ ହର୍ଷ ଗୋ ଭରି;
ଦେଖ ଗବାକ୍ଷ ପୁଟେ,
ପୀରତି-ଉତ୍ସ ଛୁଟେ;
ଅନ୍ତର ଭରି ଦର୍ଶନ ଆଶେ ଗୋପଅଙ୍ଗନା ମେଳେ,
ବ୍ୟଗ୍ର ପରାଣେ ଉତ୍ସୁକତାର ଲକ୍ଷ ଜୁଆର ଖେଳେ ।୩୭।

କାନ୍ତ ଚରିତ ସ୍ମରି ଏକାନ୍ତେ ଚିନ୍ତିତ ମନେ ରାଧା,
ଊର୍ଦ୍ଧ୍ୱେ ଥାପିଲା ଦୃଷ୍ଟି ତାହାର ଲଭିଣ ବିରହ ବାଧା;
କର୍ଣ୍ଣେ ତାହାର ଶୁଣାଅ ହେ ମଧୁବାର୍ତ୍ତା,
ବିରହ-ବହ୍ନି ତାପେ ଯେ ଦଗ୍ଧା, ଆର୍ତ୍ତା;
କୃଷ୍ଣ ଆଗମ ଅୟନେ,
ରହିଁଛି ଆଶାୟୀ ନୟନେ;
ପଙ୍କଜମୁଖୀ ରାଈ
କୃଷ୍ଣ-ପ୍ରଣୟୀବାଈ ।୩୮।

"ଲଜ୍ଜା ବରଜ କୃଷ୍ଣେ ସୁମରି କାନ୍ଦେ ବରଜବାଳୀ,
ସ୍ୱ ନୟନେ ଆଜ ଦେଖ·ହେ କୃଷ୍ଣ ! ନମ୍ର ଭ ଗୋପନାରୀ,"
ହଂସ ! ତୁରିତ ଦିଅ ଏ ବାର୍ତ୍ତା କୃଷ୍ଣେ,
ମାର୍ଗ ରହିଁଛୁ ଗୋପବାଳା ଅତି ତୃଷ୍ଣେ;
ପୀରତି ବଚନ-ଜଳ୍ପୀ ମଥୁରା ରମଣୀ ଚୟ
ବାକ୍ୟ ଶୁଣି ତୁ ନ ହେବୁ ତାହିଁରେ ଆତ୍ମହରା । ୩୯ ।

କୃଷ୍ଣର ସେହି ଚନ୍ଦ୍ରବଦନେ ଭାଗ୍ୟବଳେ,
ମଧୁପୁର ନାରୀ ଦର୍ଶନ କରେ ହଂସ ! ଖରେ;
ହର୍ଷମାନସେ ବଢାଏ ଦିବସ ଯାମିନୀ,
ମୁଗଧପରାଣେ ଆଜି ମଧୁପୁର କାମିନୀ;
ଦେଖି ସେ ଦୃଶ୍ୟ ପକ୍ଷିରାଜ !
ସାର୍ଥକ କର ନେତ୍ର ଆଜ,
କିନ୍ତୁ ଆମେ ଏ ବରଜବାଳୀ,
ମୃତ୍ୟୁ ଦୁଆରେ, କୃଷ୍ଣେ ଭାଳି ! ୪୦ ।

ପ୍ରବେଶି ମଥୁରା ନଗ୍ରେ,
ହଂସ ବିଲୋକ ଅଗ୍ରେ;
ସଜ୍ଜିତ ଯଦୁବଂଶ ସଦନ,
ନବାଗତ ତହିଁ ବିଭ୍ରମମନ;
କୃଷ୍ଣସଦନ-ଊର୍ଦ୍ଧ୍ୱେ ଉଡ଼ଇ ବିଜୟବାନା,
ସ୍ପର୍ଶି ଗଗନମଣ୍ଡଳ ଧରେ ବର୍ଣ୍ଣ ନାନ ;
ଦଣ୍ଡେ ମାତ୍ର ବିଶ୍ରାମ ଲଭି ତହିଁ,
ବାର୍ତ୍ତା ଦିଅ ତୁ କୃଷ୍ଣେ, ଥିବେ ସେ ଯହିଁ । ୪୧ ।

ଅନ୍ତଃପୁର ସଦ୍ମଶିଖର ରାଜି,
ସ୍ଫଟିକ କଳସେ ପୂର୍ଣ୍ଣ ହୋଇଛି ଆଜି;
ମଣିମାଣିକ୍ୟ ରତ୍ନ ଖଚିତ ଚଞ୍ଚୁଚରଣ ଯୁତ,
ମରାଳ ମୂର୍ତ୍ତି ଶୋଭାପାଏ ତହିଁ ଦେଖ ରେ ହଂସଦୂତ !

ବଲ୍ଲେକ ନୟନେ ଛନ୍ଦମଗନେ,
ବ୍ରହ୍ମା ଆଗମ କେହୁ ଅବା ଭଣେ;
ଦର୍ଶନେ ତୋର ହର୍ଷ ଲଭିବେ ମଥୁରାପୁରବାସୀ ପରା,
ଅଭିନନ୍ଦନେ ମୁଗ୍ଧ କରିବେ, ଦେବୁ ରେ ଆତ୍ମହରା । ୪୨ ।

ଉଦ୍ଧବ ଯେବେ ସ୍ୟନ୍ଦନ ଘେନି ଆସିଲା ବୃନ୍ଦାବନେ,
କଂସ ଆଦେଶେ କୃଷ୍ଣେ ଘେନି ସେ ଚଳିଲା ହର୍ଷମନେ,
ଗୋପଅଙ୍ଗନା ସକଳେ,
ଦଗ୍ଧପରାଣେ ବିକଳେ ;
ଜଣ ଜଣ କରି ଅର୍ପିଲେ ଶୁକ କୃଷ୍ଣକରେ,
ନିଜ ନିଜ ମଧୁ ପ୍ରଣୟ ଚରିତ ବର୍ଣ୍ଣି ଖରେ,
କୃଷ୍ଣେ ଲେଉଡ଼ାଇ ମଉପରାଣେ ଗୋପଅଙ୍ଗନା ଆଜି,
ଅନ୍ୱେଷି ସିନା ଯମୁନା ପୁଳିନେ କୁଞ୍ଜ ବିପିନ-ରାଜି । ୪୩ ।

ମୟୂର ପୁଚ୍ଛ ଶୋଭିତ କୃଷ୍ଣ ବାହୁଡ଼ିବେ ଗୋପପୁର,
ଚାହିଁଲେ ସିନା ଗୋପଅଙ୍ଗନା ସନ୍ତାପ କରି ଦୂର;
ଶୁକସାରିକା ଯେ କୃଷ୍ଣପାଶେ,
ବର୍ଣ୍ଣେ ଦୁଃଖ ମଧୁରଭାଷେ;
ଧୈର୍ଯ୍ୟ ଧରି ଗୋ ବ୍ରଜଅଙ୍ଗନା ସକଳେ,
କାନ୍ଦ ନା ଆଉ କୃଷ୍ଣ ବିରହ ବିକଳେ;
ଅଚିରେ ଆସିବେ ଫେରି,
ମାର୍ଗେ ଥାଅ ଗୋ ହେରି । ୪୪ ।

ଷୋହଳ

ହର୍ମ୍ୟ ଊର୍ଦ୍ଧ୍ୱେ ବଳେକ ଅଗୁରୁ-ଧୂମ୍ର ଶିଖା,
ନବଜଳଧର କାନ୍ତି ଯା ପାଶେ ପଡ଼ଇ ଫିକା;
ପୁଚ୍ଛ ଟେକ,
ମୁଗ୍ଧ ପରାଣେ ନୃତ୍ୟନିରତ ମତ୍ତ କେକୀ;
ଦର୍ଶନେ ତାହା ମାନସେ ଲଭିବୁ ଶାନ୍ତି,
ରମ୍ୟ ମୂରତି ନବଜଳଧର କାନ୍ତି;
ସମ୍ମୁଖେ ହେରି ବରଜବିହାରୀ ଶୋଭା,
ହର୍ଷ ଲଭିବୁ—ଦୃଶ୍ୟ ସେ ମନଲୋଭା । ୪୫ ।
କଂସ ନଗର ମଧ୍ୟଭାଗେ,
ହଂସ ରେ ! ତହିଁ ଦେଖିବୁ ଆଗେ;
ବାତାୟନ-ପଥେ କୃଷ୍ଣର କେଳିବାସ,
ମୁକ୍ତାଗୁଚ୍ଛେ ଖଚିତ ଯହିଁ ସ୍ଫଟିକ ସ୍ତମ୍ଭ ପାଶ;
ଭିତ୍ତି ସକଳ ଖଚିତ ହେମବର୍ଣ୍ଣେ ତହିଁ,
କୃଷ୍ଣବାଲ୍ୟଚରିତ ସକଳ ଖୋଦିତ ଯହିଁ ।୪୬।
ସଦନ ଦୁଆରେ ମର୍କତମଣ୍ଡ ଯଷ୍ଟି ଥାଏ,
ମତ୍ତମୟୂର ରାତେ ଯହିଁରେ ନିଦ୍ରା ଯାଏ;
ମଣିମଣ୍ଡ ସେହି ଯଷ୍ଟି ପରେ;
ବିଶ୍ରମି ତଳେ ଶାନ୍ତିଭରେ;
କୃଷ୍ଣର କେଳି ଛବି,
ମର୍ମେ ତୋ ଅନୁଭବି;
ଦଣ୍ଡେ ମାତ୍ର ହେବୁ ରେ ଆତ୍ମହରା,
ମୁଗ୍ଧ ହୋଇବ ଚିତ୍ତ ଗହନ ପରା । ୪୭ ।

---

ହେମବର୍ଣ୍ଣେ—ସ୍ୱର୍ଣ୍ଣାକ୍ଷରରେ ।

କୋମଳ ଧବଳ ତଳ୍ପ ଶୋଭିତ ପଲଙ୍କରେ,
ଶୟିତ କୃଷ୍ଣ ଦେଖିବୁ ହଂସ ପ୍ରଣୟଭରେ;
ଷେପୁରନନ୍ଦୀ ଶୋଭା,
ଆହା ଜନମନ ଲୋଭା;
ଭୁଜ ଉପଧାନେ ବିରାଜେ ପୂର୍ଣ୍ଣଚନ୍ଦ୍ର ସମ,
କୃଷ୍ଣର ମୁଖମଣ୍ଡଳ-ଶୋଭା ସେ ଅନୁପମ । ୪୮ ।

ଗଣ୍ଡଯୁଗଳେ କୁଣ୍ଡଳ ଆହା ଶୋହେ,
ନନ୍ଦ ଯମୁନା କଲ୍ଲୋଳ ମନ ମୋହେ;
କୌଷେୟବାସ କାଞ୍ଚନ ଆଭା ଧରେ;
ଇନ୍ଦ୍ରବ ସାଥେ ହର ତ୍ରଚ୍ୟୟ ଖରେ;
ଦର୍ଶନେ ତାହା ଚକ୍ଷେ,
ପୁଲକ ଜାଗିବ ବକ୍ଷେ । ୪୯ ।

ଯଦୁକୁଳପତି ସନ୍ନିଧାନେ,
ହର୍ଷିତ ମନେ ପୂର୍ଣ୍ଣ ପ୍ରାଣେ;
କରେ ଅକ୍ରୂର କୀର୍ତ୍ତିଗାନ,
ପୁରାଣର ଇତିବୃତ୍ତମାନ ।
ଗୋପ ଅଙ୍ଗନା କର୍ଣ୍ଣେ ଶୁଣି,
ଯା’ ନାମ, ଶଙ୍କା ଥାନ୍ତି ଗୁଣି;
ମଣିମୟ ସେହି ସ୍ତମ୍ଭପାଶେ,
କୁରୁକୁଳଗାଥା ବର୍ଣ୍ଣେ ହାସେ । ୫୦ ।

---

ତଳ୍ପ—ଶେଯ, ଉପଧାନ—ତକିଆ ।

ଯଦୁକୁଳ ଅବତଂସ ବାସେ,
ଆଜ୍ଞା ପାଳନେ ଉଭୟ ପାଶେ;
ସାତ୍ୟକି କୃତବର୍ମା,
ଉଭେ ଯେ ପୁଣ୍ୟକର୍ମା;
ଚାମର ଚଳାଏ ଉଦ୍ଧବ ହରିଭକ୍ତ,
କୃଷ୍ଣ ଚରଣଯୁଗାସକ୍ତ
ଗୁରୁପଦ ସେବେ ନିର୍ଭୟ ମନେ ଶିଷ୍ୟ ଯଥା,
ଶୁଦ୍ଧ ମାନସେ ପଙ୍କଜପଦ ସେବେ ସେ ତଥା । ୫୧ ।

ହସ୍ତଯୁଗଳ ସମ୍ମୁଖେ ଯୋଡ଼ି ରହି,
ସମ୍ମୁଖେ ଉଭେ ଭକ୍ତ ଗରୁଡ଼ ତହିଁ;
ଯେତେବେଳେ ହରି ଶ୍ରୀମୁଖୁଁ ଆଜ୍ଞା ପାଏ,
ସତ୍ୱର ଅନୁରକ୍ତ ପବନେ ଧାଏଁ;
ସେକାଳେ ବିଶାଳ ପକ୍ଷଯୁଗଳ ଶବ୍ଦ,
ମାନବ କର୍ଣ୍ଣଯୁଗଳ କରଏ ସ୍ତବ୍ଧ;
ଶଙ୍କା ପର୍ବତ ଉପରେ,
ଜନପଦବାସୀ ଚକିତେ ଥାନ୍ତି ପୁରେ । ୫୨ ।

ବର୍ଣ୍ଣି ନ ପାରେ ବ୍ରହ୍ମା ସେ ସୁମହାନ,
ପାତ୍ର ଚରଣ ଅଙ୍ଗୁଳି ଗୁଣ ମାନ;
ସ୍ନିଗ୍ଧ ମଧୁର ମୂର୍ତ୍ତି ବିଲୋକି ଥରେ,
ମୁଗ୍ଧ ହୋଇଲୁଁ ଗୋପଅଙ୍ଗନା ଘରେ;
ରମଣୀସୁଲଭ ଚପଳତା ବଶେ ଦୁଃସାହସ ଏ କର୍ମେ,
ଅଜ୍ଞାନବଶେ ମଜ୍ଜି ସକଳେ ଭୋଗୁଁ ଏ ଦୁଃଖ ମର୍ମେ । ୫୩ ।

ବ୍ରହ୍ମା ହରଣ କର ଗୋପବାଳ ଥରେ,
ସନ୍ତାସ ଲଭି ଅର୍ପିଲେ ପଦତଳେ;
ପ୍ରଣମି କୃଷ୍ଣ ପଦେ ଅଗଣନ ତହିଁ,
ଉତ୍ପାଟିଲେ ସେ ନିଜ ଶିରକେଶ ଯହିଁ;
ବଲ୍ମୀ ଯତି ନାରଦ ଦୃଷ୍ଟି ପଥେ
ବଲ୍ଲୀକରି ଯାରେ ବନ୍ଧଣ ହୃଦଗତେ ।୫୪

ଶ୍ରୀହରି ରମ୍ୟ ପଦ ଦର୍ଶନେ ପଦ୍ମ ରାଶି,
ସଦ୍ମ ରଚିଲେ ସଲିଳ ବିଗ୍ରହ ହର୍ଷେ ଆସି;
ଧିକ୍କାରି ହିମ ଅମ୍ବୁର ଅବସ୍ଥର,
ଦୃଷ୍ଟି କରଇ ହିମକଟରେ ନିଶା କାଳ;
ଶତ ଶତ ବାର ବନ୍ଦ୍ୟ ସେ ପାଦପଦ୍ମ,
କୋଟି ନମସ୍ୟ ଧନ୍ୟ ସେ ଶୋଭା ସଦ୍ମ । ୫୫ ।

ମର୍କତମଣି ସ୍ତମ୍ଭପ୍ରତିମ ଯୁଗଳ ଜାନୁ,
ନିନ୍ଦେ ଉଲଟ ରମ୍ଭା ଆଭା ସେ ସୁଶ୍ରୀ ଭାନୁ;
ନେନେ ନିରେଖି ଗୋପଅଙ୍ଗନା ସେ ମଧୁ ଶୋଭା
ସ୍ନିଗ୍ଧ ମଧୁର ମୁଗ୍ଧକର ସେ ମାନସଲୋଭା;
ସେ ଜାନୁ ଯୁଗଳ ସ୍ତମ୍ଭେ ଆଶ୍ରା କରି
ବନ୍ଧ ବରଜଯୁବତୀ ଚିତ୍ତ-କରୀ । ୫୬ ।

---

ସୁଶ୍ରୀଭାନୁ—ସୁନ୍ଦରଶ୍ରେଷ୍ଠ ।

କ୍ରୋଡ଼ଏ

କୃଷ୍ଣର ନାଭିମଣ୍ଡଳେ ଯେଉଁ ଅବ୍ଜ ଲେଟି,
ସମ୍ଭବ ଚତୁର୍ ବ୍ରହ୍ମା, ସର୍ଜେ ବିଶ୍ୱକୋଟି;
ସରସୀ ତୁଲ୍ୟ ଦିଶେ ତାହା ଗୋପୀ ଚକ୍ଷେ,
ଶଫରୀ ପରାୟେ ବିହରନ୍ତି ତା' ବକ୍ଷେ;
ସେ ନାଭି-ସରସୀ ଫୁଲ୍ଲ-ପଦ୍ମ,
ସୃଷ୍ଟିକର୍ତ୍ତା ବ୍ରହ୍ମା ସଦ୍ମ । ୫୭ ।

ରମ୍ୟ ତ୍ରିବଳି ଉଦରପ୍ରାନ୍ତେ ଶୋହେ,
ବକ୍ଷେ ସୁମନ-ମାଳିକା ମାନସ ମୋହେ;
କୌଷେୟବାସେ ମଣ୍ଡିତ କଟିଦେଶ
ବର୍ଣ୍ଣି ନୋହେ ସେ ଶୋଭା ପରିପାଟୀ ଲେଶ;
ଯଶୋଦା ସେ ମୁଖ ଗହ୍ୱର-ପଥେ କୃଷ୍ଣ ଉଦରେ ଥରେ,
ବିଶ୍ୱ ସକଳ ନେତ୍ରେ ଦେଖିଲା ବିସ୍ମିତ ହୋଇ ଖରେ । ୫୮ ।

ବନମାଳାଶୋଭି କୃଷ୍ଣ ଉର,
ମୋହେ ଗୋପବାଳା ଚିତ୍ତପୁର;
ଦର୍ଶନେ ଯାର ଅବ୍ଜନୟନା ବରଜନାରୀ,
ଦର୍ପକ ସମ ଶରେ ଶରେ ଶାନ୍ତ ହୋଇଲେ ଧୀର;
କୌସ୍ତୁଭମଣି ଖଦ୍ୟୋତ ପ୍ରଭା ଗୁଣ,
ସୁନ୍ଦର ଦିଶେ ଶ୍ରୀପତି କଣ୍ଠେ ପୁଣ;
ବକ୍ଷଶୋଭା ସେ କୌସ୍ତୁଭମଣି କୋଟି ସୂର୍ଯ୍ୟର ତେଜ,
ନଦିଇ ଖରେ, ରବିପାଶେ ଯଥା ଖଦ୍ୟୋତ ଛବି ହେଜ ।୫୯।

ଏକୋଇଶ

ଇନ୍ଦ୍ରନୀଳର ସ୍ତମ୍ଭଯୁଗଳେ ନନ୍ଦେ ଯା' ବେଣ୍ଡଭୂଜ,
କେୟୁରଭୂଷିତ କେଶୀହନ୍ତକ ଧନ୍ୟ ସେ ବଳାନୁଜ;
ଉନ୍ମାଦନୀ ସେ ଗୋପୀଭୂଜମାଳ କଣ୍ଠେ ଦୋହେ,
ମତ୍ତମାନସେ ମୁଗଧ ପରାଣେ ଚିତ୍ତ ମୋହେ;
କସ୍ତୁରୀବାସେ ବରଜବାଳା,
ହର୍ଷେ କଲେକ ହୃଦସୁମାଳା । ୬୦ ।

ନବ ଲାବଣ୍ୟ କଲ୍ଲୋଳ ଅଗଣନ,
ବଚ୍ଛରେ ମୁଖମଣ୍ଡଳୁଁ ଘନ ଘନ;
ମୁଗ୍‌ଧ ମଧୁର ଚିତ୍ତ,
ପ୍ରଣୟ ଭାବନା ସିକ୍ତ;
ଚଞ୍ଚଳ ଭ୍ରୂବଲ୍ଲୀ ଯୁଗଳ,
ହାସ୍ୟ ପୀୟୂଷ, ଅବା କେଳି ଘର;
ସସ୍ମିତମୁଖେ ଦର୍ଶନପଂକ୍ତି ଯା'ର,
ମୁକ୍ତାମାଳାର ପ୍ରତ୍ୟସ୍ଥ ବାରବାର ।୬୧।

କୃଷ୍ଣ ମଧୁର ରୂପ ବର୍ଣ୍ଣନେ ଅକ୍ଷମ ମୁଁ ଯେ ହଂସ !
ବାକ୍ୟେ କ ଅବା ବର୍ଣ୍ଣିବ ଯଦୁବଂଶର ଅବତଂସ;
ନେତ୍ରଯୁଗଳେ ଦର୍ଶନ କଲେ ଥରେ,
କରବୁ ରେ ଉପଲବଧି ସେ ରୂପ ଘରେ;
ଚିନ୍ମୟ ସେହି ମୁକ୍ତି ଧାମ,
ଦର୍ଶନେ ହେବୁ ପୂର୍ଣ୍ଣକାମ । ୬୨ ।

---

କେଶୀହନ୍ତକ ବଳାନୁଜ—କୃଷ୍ଣ ।

ମଦକଳରବ ହଂସୀ-ସୁରତ-ମୁଗ୍ଧମତ୍ତ ରେ ହଂସ !
ଦେଖି ତ୍ରସ ମୁଗ୍ଧା ମଧୁପୁର ବଧୂ ମେନେ ଯଦୁ ଅବତଂସ;
ସେକାଳେ ଗ୍ରାମ୍ୟ ବରଜ ଯୁବତୀ କଥା,
ବର୍ଣ୍ଣିବୁ ନାହିଁ ଫଳ ହେବ ଅନ୍ୟଥା;
ଗ୍ରାମ୍ୟରମଣୀ ନମ୍ର ବଚନତ ଶ୍ରାବ୍ୟ କି ସେତେବେଳେ ?
ସୁଧାତୃପ୍ତର ରସନା ଲୋଡ଼େ କି ଅମ୍ଳତକ୍ର ହେଲେ ? । ୭୩ ।

ମତ୍ତକୋକିଳ ଉଚ୍ଚ କୂଜନେ ପୂରିତ ବୃନ୍ଦାବନ,
ପ୍ରସ୍ଫୁଟିତ ସେ ବନମଲ୍ଲିକା ଗନ୍ଧ ଆମୋଦେ ଘନ;
କର୍ଣ୍ଣେ ଶୁଣି ସେ ଶବ୍ଦ,
ଦଣ୍ଡେ ହେଉଁ ରେ ସ୍ତବ୍ଧ;
ଅଙ୍ଗ ପୁଲକେ ମନ୍ଦବାତେ,
ଦର୍ପକ ବାଣେ ଅକସ୍ମାତେ;
ଦଗ୍ଧ ପବନେ ଦୀର୍ଘ ଦିବସ ଯାମିନୀ,
କହିବୁ ହଂସ ! ଯାପୁ ଆମେ ଗୋପକାମିନୀ ।୭୪।

ଗୋଷ୍ଠ-ବାହୁଡ଼ା କୃଷ୍ଣେ କହିବ ବୃନ୍ଦାବନର କଥା,
ଗୌରବଯୁକ୍ତ ପ୍ରଣୟିନୀ ରାଧା ମର୍ମ ବେଦନା ତଥା;
କମ୍ର ବଚନେ ନମ୍ର ବଦନେ ଲଳିତା ସଖୀ,
ବର୍ଣ୍ଣିଲ ରାଜ୍ଞୀ ବିଚ୍ଛେଦ-ଗାଥା ଭକ୍ତି ରଖି—
ଅମ୍ବୁଜ ପଦତଳେ,
ସ୍ୱର୍ଣ୍ଣପୀଠର ପରେ । ୭୫ ।

---

ଅମ୍ଳତକ୍ର—ଖଟା ଦହି ;

ଶୈଶବକାଳୁଁ ଯତ୍ନେ ନୂତନ ପଦ୍ମଦଳେ,
ପାଳିଥିଲ ଯେଉଁ କପିଳିକା ଧେନୁ ଯତ୍ନ ବଳେ;
ଦୁଗ୍ଧ ବର୍ଦ୍ଧନେ ଅକ୍ଷମ ସେହି ଗାଭୀ,
ହମ୍ବାରଡ଼ିରେ ଖୋଜଇ ତୁମକୁ ଭାବି;
କହିବୁ ହଂସ ! ତୁରତେ କୃଷ୍ଣେ ଯାଇ,
କୃଷ୍ଣେ ସୁମର ଦୁଃଖିନୀ ସେହି ଗାଈ । ୭୬ ।

ଘନ କଦମ୍ବ ପାଶେ ବାସନ୍ତୀ ବଲ୍ଲୀ ଯାହା,
ଆପଣା ହସ୍ତେ ରୋପିଥିଲେ ହରି ହର୍ଷେ ତାହା;
ପଲ୍ଲବଯୁତ କୁସୁମିତ ସେହି ବଲ୍ଲୀ ଆଜ,
ଦର୍ଶନେ ତାର ଧୈର୍ଯ୍ୟବନ୍ଧ ଯାଏ ଗୋ ଭାଜ;
ମଧୁ ଝରାଇ ସେ କୁସୁମନୟନୁଁ କାନ୍ଦେ ସିନା,
କନ୍ଦାଏ ପୁଣି ଗୋପଯୁବଣ୍ଠାରେ କୃଷ୍ଣ ବିନା । ୭୭ ।

ଦେବକୀ ଗର୍ଭୁଁ ସମ୍ଭୂତ ହୋଇ,
ମୁଗ୍ଧ କରିଲେ ଗୋପେ ଗୋପଗୋଷ୍ଠୀ;
ହର୍ଷିତମନେ ବୃନ୍ଦାରଣ୍ୟେ ରଚିଲେ କ୍ରୀଡ଼ା,
ମୁଗ୍ଧପରାଣେ ମିଳିଲେ ଗୋପୀଏ ବରଜ ବ୍ରୀଡ଼ା;
ହାୟ ! ନିଷ୍ଠୁର ଅକ୍ରୂର ସେହି କଂସଦୂତ,
ଧ୍ୱଂସିଲ୍ ସିନା ପ୍ରଣୟ-ହର୍ଷ ଶୁଦ୍ଧ ପୂତ । ୭୮ ।

କୃଷ୍ଣ ଯେବନ୍ତୁ ତେଜିଲେ ବୃନ୍ଦାବନ,
ଭସ୍ମ ଦୁର୍ଦ୍ଦଶା ମାଡ଼ ପଡ଼େ ଘନଘନ,
ଚଉର ଆଜ ଜବସଲନ୍ତିକା ପୂର୍ଣ୍ଣ,
ବ୍ରଜ-ପରସର-ହର୍ଷସୌଧ ଚୂର୍ଣ୍ଣ;
ବିଚ୍ଛେଦ ଲଭ ଦଗ୍ଧପରାଣେ ବିତାଏ ଦିନ,
କହିବୁ ହଂସ ! ଗୋପ ଅଙ୍ଗନା ହର୍ଷହୀନ । ୬୯ ।

ହର୍ଷବଲ୍ଲୀରେ ପୂରିତ ବରଜପୁର,
ଏ କାଳେ କୃଷ୍ଣ କରିଲେ ଆମକୁ ଦୂର;
ଆଘ୍ରାଣି ଆଜ ପୁଷ୍ପିତ ସେହି ଲତା,
ଗୋପଅଙ୍ଗନା ହୋଇବୁ ମୂର୍ଚ୍ଛାଗତା;
ଦଣ୍ଡେକ ଲାଗି ଆସି ଏ ବରଜ ଧାମେ,
କୃଷ୍ଣ ହେ ରଖ ମୃତ୍ୟୁଦୁଆରେ ଆମେ । ୭୦ ।

ରାଜନନ୍ଦନୀ ରାଧା-ଅର୍ଚ୍ଚିତ ପଦ,
ପଲ୍ଲୀବାସିନୀ ହୃଦଧନ ସମ୍ପଦ;
ମତ୍ତ ସେ ଗୋପଅଙ୍ଗନା କାମବାଣେ,
ବିଚ୍ଛେଦବାଧା ଅନ୍ତର ସଦା ହାଣେ;
'ବର୍ଜ' ସଦନ କୃଷ୍ଣ ହେ ! ଘନେ ଅନ୍ଧକାରେ,
ଲତା ବେଷ୍ଟିତ କୁଞ୍ଜେ ଚଳିଲେ ହର୍ଷେ ବାରେ;
ମାର୍ଗ ବିଲୋକ ତୃଷ୍ଣେ,
ନେତ୍ରେ ନ ଦେଖି କୃଷ୍ଣେ । ୭୧ ।

---

ଜବସ ଲନ୍ତିକା—ଦୂବଲତା,

ପଞ୍ଚଶ

ବର୍ଜନ କଲ ଗୋପ ଅଙ୍ଗନା ସକଳେ,
ସ୍ପନ୍ଦନରତା ବିଚ୍ଛେଦେ ଅନ୍ତ ବିକଳେ;
କୃଷ୍ଣ ହେ ! ଏତ ତୁମ୍ଭ ଦୂଷଣ ନୁହଇ,
ଶ୍ୟାମ ଅଙ୍ଗରେ ସମ୍ଭବ ତାହା ହୁଅଇ;
ନନ୍ଦତନୟ ମନ୍ଦତନୟ ସମ,
ନିର୍ଦ୍ଦୟ ହାୟ ! ନିଷ୍ଠୁର ନିରମମ;
ପକ୍ଷ ଉଦୟେ ପିକ ଯଥା କାକସଙ୍ଗ ତେଜି,
ପାସୋରିଲେ ତଥା ମଧୁପୁର ବାଳା ମୈତ୍ରୀ ହେଜି । ୭୨ ।

ପ୍ରଣୟରସର ରଙ୍ଗମଞ୍ଚ ବିରଚି ଧରା,
ପ୍ରୀତି ଅଭିନୟ ନାଟ୍ୟ ରଚିଲେ ଗୋପୀଏ ପରା;
ଜାଣି ଶୁଣି କିଆଁ ଅଜଣା ସମ,
ହେ ନିରମମ;
ନର୍ତ୍ତନରତ ଅଂଗନା ସାଥେ ଥିଲ ଯେ ତୁମେ,
କିମ୍ପା ତୁମେ;
କହିବୁ ହଂସ ! ବୃନ୍ଦା-ବିପିନ-ଚନ୍ଦ୍ର ପାଶେ,
ରାଧା ନାମ ଭୁଲି ରହିଲେ କେସନ ଆଉ କା’ ବାସେ । ୭୩ ।

କୁଞ୍ଜନିଳୟ ବାସୀ ହେ କୃଷ୍ଣ ! ଶୁଣ ହେ କର୍ଣ୍ଣପୁଟେ,
ବିଚ୍ଛେଦେ ତବ ଗୋପ ଅଙ୍ଗନା ଅନ୍ତରେ କୋହ ଉଠେ;
ତୁମ୍ଭ ବିନା କେ ସାହା,
ନ ମିଳେ ମୁକ୍ତି ରାହା;

---

ନନ୍ଦତନୟ-ଶ୍ରୀକୃଷ୍ଣ; ମନ୍ଦତନୟ-କୋଇଲି

[illegible]

ପ୍ରଣୟ-ମଧୁର ବିରହ-ବିଧୁର ରାଧିକା ମଳିନ ବେଶେ,
ଭ୍ରମେ ତଉଦ୍ଦିଗେ ସାଧାରଣ ନାରୀ ସମ ଆହା ଅବଶେଷେ ।୭୪

କୁହ ହେ କୃଷ୍ଣ ! ନିଜ ଦୋଷରୁଁ କିବା ଦୁଃଖଦଗ୍ଧା ଆମେ;
ତୁମେ ବା ଦୁଃଖ ହୁତାଶେ ଜାଳୁଛ ଆମକୁ ବିରଜ ଧାମେ;
ବିରହ-ହୁତାଶ ଜଳେ ଅବିରତ,
ଦଗ୍ଧ ହେଉଛୁଁ ଗୋପୀଏ ନିରତ;
ନିଷ୍ଠୁର ହରି ! କୁହ କେସନ ସେ ଦୁଃଖନିଆଁ,
ଅନ୍ତରେ ତବ ଭୟ ନ ଜଗାଏ କେଜାଣି କିଆଁ । ୭୫ ।

ବିରହ ଦୁଃଖେ ରାଧିକା ନେତ୍ରୁ ବହିଣ ଅଶ୍ରୁଧାର,
ହ୍ରସ୍ୱ କରିଲା ଯମୁନାରେ ନାଶି ଗୁରୁ ଗୌରବ ତାର;
ସୃଷ୍ଟି କରିଲା ଆନ ଏକ ନଦୀ ସନ୍ତୁ,
ଦଣ୍ଡ ଦିଅଇ କୁପିତେ ଶମନ ତନ୍ତୁ;
କୁହ ରେ ହଂସ ! ଏ କାଳେ କୃଷ୍ଣ ଆସି,
ନାଶିବେ ରାଧିକା ହୃଦୟ ଦୁଃଖରାଶି । ୭୬ ।

କୁବ୍‌ଜା ନାୟିକା ପ୍ରଣୟ ଚିନ୍ତ
ଅନ୍ତର ତଳେ ରାଧା,
ହିତ ବା ଅହିତ ବିଚାରରହିତ
ଲଭି ବିଚ୍ଛେଦବାଧା,

ଶମନ—ଯମ, ଯମୁନାର ଭାଇ; ହୁତାଶ—ଅଗ୍ନି ।

ସରୋଜିନୀ

ରୂପଶିଖ୍ଳେଖା ଶଲଖା ଯେସନ,
ଅନଳେ ନଜଳୁ ଦହେ,
କୃଷ୍ଣମଗନା ରାଧିକା ତେସନ
ବିଚ୍ଛେଦ ତାପ ସହେ । ୭୭ ।

ପୁଷ୍ପିତ ଆଜ ବୃନ୍ଦାବନ,
ଉଚ୍ଛନ ଗୋପୀବୃନ୍ଦ ମନ;
ନ ଫୁଟେ ରେ ବାଣୀ ଅଧରପୁଟେ,
ଅନ୍ତରେ ଭାବକୁଆର ଛୁଟେ;
ଦିବସ ରଜନୀ ଯାପିବୁ କେମନ୍ତେ ଏ ମଧୁମାସେ,
ରସରାଜ ଆଜ ନାହାଁନ୍ତିରେ ସଜନି ! ଆମ୍ଭ ପାଶେ । ୭୮ ।

ବିଦଗ୍ଧ ନାୟିକା ସେ କୁବ୍‌ଜା ନାୟିକା
କୃଷ୍ଣ କୁଟିଳ ହୃଦେ,
ବସନ୍ତ ଉତଲମୁଦେ ।
ପୁଣ୍ୟ ଅନ୍ତେ ସରଳହୃଦୟା ରାଧା,
କୃଷ୍ଣ କୁଟିଳ ଚିତ୍ତ ଭେଦନେ
ସକ୍ଷମ ହୁଏ ନାହିଁ ।
ନିବେଦନ କର ହଂସ ରେ ଯାଇ କୃଷ୍ଣେ,
ପଥ ଚାହିଁ ରାଧା ବସି ଅଛି ଅତି ତୃଷ୍ଣେ । ୭୯ ।

ଅଠେଇଶ

ପ୍ରେତ ଆବିଷ୍ଟ ଭୁଜଗଦଷ୍ଟ ମୂର୍ଚ୍ଛିତ ତନୁ ତା'ର,
କି ଅବା ଅପସ୍ମାର !
ବାଧିଲା ପରାଏ ସଂଜ୍ଞାବନ୍ଧନା ରାଣ୍ଡ
କୃଷ୍ଣପ୍ରଣୟବାଇ;
ଗୁରୁ ଗୁରୁଜନ ଶାନ୍ତ ଲଭିଲେ ହେଲେ,
ମୁରଲୀ ଶବ୍ଦ କର୍ଣ୍ଣେ ପଡ଼ିଲା ବେଳେ । ୮୦ ।

ଅଶୁଭ ଶକୁନ ଚିତ୍ତକୁହରେ ତା'ର
ଅତର୍କିତରେ ଘୋଟିଯାଏ ବାରବାର;
ରାଧାକୁ ବରଜ ଦୂରେ,
ଯାଷା ରହିଲ ନିର୍ମମ ମଧୁପୁରେ;
ରାଧାରାଣୀ ତବ ପ୍ରଣୟ ଆର୍ତ୍ତା,
ନ ପାଇ ତୁମର କୁଶଳ ବାର୍ତ୍ତା;
ଦଗ୍‌ଧ ପରାଣେ ପଦୁ ଚରଣ ଧ୍ୟାଳ ;
ବଞ୍ଚଇ ଦିନ ଆଳି । ୮୧ ।

ସିଦ୍ଧ ପୁରୁଷ ଚରଣ ଯୁଗଳେ ନମ୍ର ଶିରେ,
ତାନ୍ତ୍ରିକ ପାଶେ ଶରଣ କେବେ ବା ପଶଇ ଧୀରେ;
ବୈଦ୍ୟ ଗଣେ
ପ୍ରତି ମୁହୂର୍ତ୍ତି ମିନତି ଭଣେ ।

---

ଶକୁନ—ଲକ୍ଷଣ

ଅଣତିରିଶ

ଅଦ୍ରିତନୟା ପଦ୍ମଚରଣ ତଳେ,
ଶରଣ ଲୋଡ଼ଇ ଭାସି ସେ ଦୁଃଖ ଜଳେ;
ଚଞ୍ଚଳ ହେଲେ ମତି,
ହିତକର ବୋଲ କାହାରେ ନ ମଣେ
ବିବ୍ରତ ହୋଇ ଅତି । ୮୨ ।

ହରପ୍ରଣୟୀ ସେ ପଶୁପତି ଶିବ
ଦେବତାହର୍ମ୍ୟବାସୀ,
କର୍ପୂର-ଆଭାନନ୍ଦୀ ମୂରତି
ରଜତ ଅଦ୍ରିଶୃଙ୍ଗ;
ତୁମର ଅଙ୍ଗସଙ୍ଗ କାମନା କରି,
ଦୁଃଖିନୀ ରାଧା ଶଙ୍କରପଦେ ସେବେ ଅନ୍ତର ଭରି । ୮୩ ।

ଅଙ୍କନ କରି ତମାଳପତ୍ରେ ମୂର୍ତ୍ତି ତବ,
ବିଶ୍ୱମୋହନ ସ୍ନିଗ୍ଧ ମଧୁର ସେ ଅଭିନବ;
କୃତ୍ରିମ ସେହି ମୂର୍ତ୍ତି ଗଳେ,
ଭୁଜଲତିକାରେ ଛନ୍ଦି ବଳେ;
ମହୀଲୁଣ୍ଠିତା ସଂଜ୍ଞାବିହୀନା ଆହା
ଦିବସ ରଜନୀ ନ ପାଏ ମୁକ୍ତିରାହା । ୮୪ ।

ତବ ଗୁଣ ଗୁଣି ଦିବସ ଯାମିନୀ ରାଧିକା ଆଳି,
ଚେତନାଶୂନ୍ୟା ଭୂତଳପତିତା ଦୁଃଖ ଭାଳି;

---

ରଜତଅଦ୍ରିଶୃଙ୍ଗ—କୈଳାସ ପର୍ବତ ଭ୍ରମଣକାରୀ

ଚରଣ

ବିରହ ଅଗ୍ନି ତାପେ ବିଦଗ୍ଧା ଗାତ୍ର,
ନିଜକୁ କୃଷ୍ଣ ମଣି ସେ ହେଲାଣି ବାଇ;
ବିଚ୍ଛେଦ ଯୋଗୁଁ ଅଂଗ ସୁଷମା ହୀନ,
ହୁଅଇ ଦିନକୁ ଦିନ;
ଦୁର୍ଭାଗ୍ୟା ସେ ଆଜି,
ଦଗ୍ଧ ଯାଉଛି ଭାଜି । ୮୫ ।

କଂସବିଜୟି ! ସନ୍ତାପ ତାକୁ ଦେଲେହେଁ ଯେତେ,
ତଥାପି ସେ ତୁମ ସଙ୍ଗ ଲୋଡ଼ଇ ପାସୋରେ କେତେ ?
ତୁମ୍ଭ ବିହୁନେ ବଜ୍ରକଠିନ
ହେଲା ତା ହିଆ,
ସତୀଶିରୋମଣି ରାଧିକା ଦୁଃଖ
ବୁଝିବ କିଆଁ ? ୮୬ ।

"କୃଷ୍ଣ ମିଳିବେ ଯୋଗବଳେ", ଏହା କର୍ଣ୍ଣେ ଶୁଣି,
ନିଷ୍ଠା ଆଚରି ରାଧା ଆଜି ଯୋଗ ରଚଇ ପୁଣି;
ବର୍ଜି ସଜନୀସଙ୍ଗସୁଖ,
ଦେଖିବାକୁ ତୁମ ଚନ୍ଦ୍ରମୁଖ;
ସଂଯମ ବ୍ରତ ପାଳନ କରଇ ରାଧା,
ଉପଶମିବାକୁ ଅଙ୍ଗୁଁ ବିରହବାଧା । ୮୭ ।

ଏକତରଣ

ଅର୍କତନୟା ନୀଳ ଉତ୍ପଳକାନ୍ତିହର !
ସୁରଶିରୋମଣି ! ବୃନ୍ଦାବନର ପଞ୍ଚଶର !
ବ୍ରଜପୁରବାସୀ ହର୍ଷଦାୟକ !
ନନ୍ଦତନୟ ! ମୁଗ୍ଧନାୟକ !
ଉଚ୍ଚାରି ତୁମ ନାମ ଅହରହ ଶ୍ରଦ୍ଧା ଢାଳି,
ସ୍ପନ୍ଦନରତା ଗଣ୍ଡ, କହାଏ ସକଳ ଆଳି ।୮୮।

ବିରହ ଅଗ୍ନି ତପ୍ତ ଶିଖାର ମଧ୍ୟଭାଗେ,
ହରିଣୀ ସମାନ ବନ୍ଦନୀ ରାଧା, ଦୁଃଖ ଲାଗେ;
ଚଣ୍ଡମଦନ ଦଣ୍ଡେ ଶିକାରୀ ସମ
କୃଷ୍ଣ ହେ ତୁମେ ନିର୍ଦ୍ଦୟ ନିରମମ;
ଜୀର୍ଣ୍ଣ ଶୀର୍ଣ୍ଣ ଅଙ୍ଗ ତାହାର ଦିନକୁ ଦିନ,
ଆଜ ଅବା କାଲ ଜୀବନ ତେଜିବ ଚନ୍ଦ୍ରାନନା ।୮୯।

ଚନ୍ଦ୍ରମଉଳି ନୟନପ୍ରାନ୍ତୁଁ ଅଗ୍ନିରାଶି,
ଦଗ୍ଧ କରିଲା ଦର୍ପକ ତନୁ ସହସା ଆସି;
ଅବ୍ଧି ସଲିଳେ ଯେସନ ଚନ୍ଦ୍ର ଛାଇ,
ମୂର୍ତ୍ତି ତୁମର ରାଧା ଅନ୍ତରେ ଥାଇ;
ଦର୍ପକର ସେ ଦର୍ପନାଶନେ ଶଙ୍କରସେବା କରେ,
ତେଣୁ ହେ କୁତୁକୀ କୃଷ୍ଣ ! ମଦନ ମାରି ନ ପାରଇ ଶରେ ।୯୦

---

ପଞ୍ଚଶର—କନ୍ଦର୍ପ, ଅବ୍ଧି—ସମୁଦ୍ର, ଦର୍ପକ—କନ୍ଦର୍ପ

ଗୋପ ଅଙ୍ଗନା ନ ଜାଣୁ ହେ ଭାବଗୁଣ,
ଛନ୍ଦ କପଟ ନ ଜାଣୁଁ କୃଷ୍ଣ ! ପୁଣ;
ଅନ୍ତର ଆମ ଅନୁରାଗ ଭରା,
ଆନ କଥା ମନେ ନ ଆସିଇ ପରା;
ଉଦ୍ଧବ ଉପଦେଶ,
ନ ଦିଏ ଶିକ୍ଷା ଲେଶ,
ଶାନ୍ତ ନ ଆଣେ ଚିତ୍ତକୁହରେ ଭକ୍ତି ରସର ଶିକ୍ଷା,
ଦ୍ୱିଗୁଣିତ କରେ ଦୁଃଖ ହେ ହରି ! କରୁଁ ତୁମ ପ୍ରେମଭିକ୍ଷା ।୯୧।

ଉତ୍ତମ ଗୁରୁ ଯୋଗ୍ୟ ଶିଷ୍ୟ ଉଦ୍ଧବ ତବ ଭକ୍ତ,
ଦକ୍ଷ ସଚିବ ପାର୍ଶ୍ୱେ ରହିଲେ ତୁମ୍ଭ ଗୁଣାସକ୍ତ;
ଶମନଭଗିନୀ ଶକ୍ତି ସମାନ ଶୋଭେ,
"ବ୍ରଜ ମହାରାଜ" ନାମ ଜନମନ ମୋହେ;
ଏତେବେଳେ ଅବା ରାଧିକା ଗୁହାରି ମାନ,
ତୁମ୍ଭ ବନ୍ଧୁନେ ଶୁଣିବ କେ ଅବା କୃଷ୍ଣ ହେ ସୁମହାନ ।୯୨।

ବିଭ୍ରମି ବନେ ଦୁଃଖିତ ମନେ ରାଧିକା ଶୀର୍ଣ୍ଣକାୟା,
ଉତ୍କଣ୍ଠିତା ଅଙ୍ଗକାନ୍ତ ଦଣ୍ଡେ ଚଳଇ ମାୟା;
ବର୍ଜିଛି ଆଜି ଜାଣ,
କ୍ରୀଡ଼ା କୌତୁକ ମାନ;

---

ଶମନଭଗିନୀ—ଯମୁନା

ଉତ୍ପଳ ଯଥା ବିକଶେ ଚନ୍ଦ୍ର କିରଣ ଲଭି,
ବ୍ରଜଚନ୍ଦ୍ରମା ! ତୁରିତେ ଆସ ହେ ତା ଅନୁଭବି;
ତୁମ୍ଭର କର ପରଶେ,
ବିକଶିବ ରାଈ ଅଙ୍ଗକୁମୁଦ ହରଷେ । ୯୩ ।

ତୁମର ଅଙ୍ଗ ସଙ୍ଗ ଲଭିବା ପାଇଁ
କଷ୍ଟେ ଯାପଇ ଦିବସ ରଜନୀ ରାଈ
ଆଶା-ବନ୍ଧନେ ସିନା,
ବଞ୍ଚି ରହିଛି ଦୀନା;
ତୁମର ପ୍ରତ୍ୟାଗମନ ମାର୍ଗ ଚାହିଁ
ଆଶାପ୍ଥୀ ପଥରେ ପ୍ରତୀକ୍ଷମାଣା ରାଈ,
ମୁଞ୍ଚି ନୟନୁଁ ବାରି,
ଦୁଃଖେ ହୋଇଣ ଝାରି । ୯୪ ।

ଅନୁପମ ଦଶା ଭୋଗଇ ଦୁଃଖେ ରାଈ
କାମବାଣ ପାତେ ଆହ୍ୱାନେ ଝାହି ଝାହି;
କୁମୁଦନେତ୍ରା ଭାବନା ହୋଇଛି ଭଙ୍ଗ
ଇଚ୍ଛେ କେବଳ ତୁମର ଅଙ୍ଗ ସଙ୍ଗ;
ବଞ୍ଚାଏ ଜୀବ କେବଳ ତୁମର ଆଶା ସହଚରୀ ସିନା,
ମୁଞ୍ଚି ସକଳ ଆଳି ଆଜ ରାଧା, ହୋଇଛି ବିଷାଦ ଲୀନା ।୯୫।

---

ଉତ୍ପଳ—କଇଁ

ଚଉତିଶ

ରାସକେଳି ରସ ଚତୁର କୃଷ୍ଣ ! ଦେଖ ସତ୍ୱର ଆସି
ପ୍ରାକ୍ତନ ନବ ପ୍ରଣୟାବଦ୍ଧ ରାଧିକା ଦୁଃଖରାଶି
ଶତଧିକ୍‌କାର ପ୍ରଣୟେ ତାହାର,
ଭଗ୍ନ ସେ ଯେ ଆଜ ମୃତ୍ୟୁଦୁଆର;
ଟଳେ ହେଲେ ତୂଳା ତାର ନାସାପୁଟ ପାଶ
କଂପିତ ନୋହେ—ଲଭିଲା ସ୍ୱର୍ଗବାସ ? । ୯୬ ।

ଚକ୍ଷୁଯୁଗଳ ନିମୀଳିତ ଆଜ ତା'ର,
ଉନ୍ମାଦେ କଥା ଜଳ୍ପଇ ବାରବାର;
ବର୍ଣ୍ଣି ନୋହେ ସେ ଦୁଃଖମାନ,
ଦର୍ଶନେ ଥର ଉଠେ ପରାଣ
ପ୍ରଣୟ ଆବେଗ ଭରେ,
ଢଳପଇ ଥରେ ଥରେ;
ହଂସ ରେ ! ରାଧା ଚିତ୍ତକୁହରେ ବେଦନା ଉତ୍ସ ଫୁଟେ,
ଚଳ ଚଞ୍ଚଳେ ଦିଅ ଏ ବାର୍ତ୍ତା କୃଷ୍ଣ ଶ୍ରବଣପୁଟେ । ୯୭ ।

ସତେ ସେ କୃଷ୍ଣ ବାହୁଡ଼ିବେ ମୋର ପାଶ,
ମେଣ୍ଟିବ ମୋର ମନର ସକଳ ଆଶ;
ବର୍ଣ୍ଣି ନୋହେ ସେ ଅତୀତ ପ୍ରଣୟ କଥା,
ଅକ୍ଷୟ ସେ ଯେ ଦିବ୍ୟ, ମଧୁର ତଥା;
ଏସନ ପ୍ରଣୟେ ରସିକ କୃଷ୍ଣ ଉଦାସୀନ ହେଲେ ସିନା,
ଚିନ୍ତ ଅତୀତ ପ୍ରଣୟ ଲକ୍ଷାପ୍ରାପ୍ତା ଆଜ ଏ ଦୀନା । ୯୮ ।

ରାଧାର କଷ୍ଟ ହେଲ ଗରିଷ୍ଠ ତୁମ୍ଭ ବିନା,
ପ୍ରଣୟପୂର୍ଣ୍ଣ ହୃଦୟ ଚୂର୍ଣ୍ଣ ହୋଇବ ପିନା ।
ଚନ୍ତେ ସେ ଏତେ କମ୍ପା ନ ଆସ ହରି,
ରାଧାର-ପ୍ରଣୟ-ଉସ୍ର ଗଲାଣି ସରି,
ଆମ୍ଭର ଶେଷବାର୍ତ୍ତା କୃଷ୍ଣ ! ଏହି,
ବଞ୍ଚାଅ ତାରେ ଦର୍ଶନ ବାରେ ଦେଇ । ୯୯ ।

ଏହି ଏ କୁଞ୍ଜବନେ,
କ୍ରୀଡ଼ା କୌତୁକେ ମତ୍ତ କୃଷ୍ଣ ସତତ ହର୍ଷମତନେ;
ହର୍ଷ ମାନସେ ଆଳ,
ଯାଉଥିଲେ କାଳ କୁଞ୍ଜବିପିନେ କୃଷ୍ଣପ୍ରଣୟ ଭାଳ;
ଏହି ସେ କୁଞ୍ଜବନ,
କୃଷ୍ଣବିରହେ ଦୁଃଖୀ ଭୋଗଇ ଅନ୍ତରେ ଅଗଣନ;
ପ୍ରଭୁର ସଦୟ ଦୃଷ୍ଟି—
ବିନା ଏ ଜଗତେ ଅନ୍ତରେ କା'ରି ହୁଏ କି ହର୍ଷ ସୃଷ୍ଟି ?
ସଦୟ ହୃଦୟ ହଂସ !
କଂସ ନଗରୁ ବେଗେ ବାହୁଡ଼ାଅ ଯଦୁକୁଳ ଅବତଂସ ।୧୦୦।



# ହଂସଦୂତମ୍

ଦୁକୂଳଂ ବିଭ୍ରାଣୋ ଦଳିତ-ହରିତାଳ-ଦ୍ୟୁତିହରଂ ।
ଜବାପୁଷ୍ପଶ୍ରେଣୀରୁଚିରୁଚିରପାଦାମ୍ବୁଜତଳଃ ॥
ତମାଳଶ୍ୟାମାଙ୍ଗୋ ଦରହସିତଲୀଳାଞ୍ଚିତମୁଖଃ,
ପରାନନ୍ଦାଭୋଗଃ ସ୍ଫୁରତୁ ହୃଦି ମେ କୋଽପି ପୁରୁଷଃ । ୧ ।

ଯଦା ଯାତୋ ଗୋପୀହୃଦୟମଦନୋ ନନ୍ଦସଦନା—
ନ୍ମୁକୁନ୍ଦୋ ଗାନ୍ଧିନ୍ୟାସ୍ତନୟମନୁରୁନ୍ଧନ୍ମଧୁପୁରୀଂ ।
ତଦାମାଙ୍କ୍ଷୀଚ୍ଚିନ୍ତାସରିତି ଘନଘୂର୍ଣ୍ଣାପରିଚୟୈ—
ରଗାଧାୟାଂ ବାଧାମୟପୟସି ରାଧାବିରହିଣୀ । ୨ ।

କଦାଚିତ୍ ଖେଦାଗ୍ନିଂ ବିଘଟୟିତୁମନ୍ତର୍ଗତମସୌ,
ସଖୀଭିର୍ନିନ୍ୟେ ତରଳିତମନା ଯାମୁନତଟୀଂ ।
ଚିରାଦସ୍ୟାଶ୍ଚିତ୍ତଂ ପ୍ରକଟିତକୁଟୀରାବକଳନା—
ଦବସ୍ଥାଂ ତସ୍ତାର ସ୍ଫୁଟମଥ ସୁଷୁପ୍ତେଃ ପ୍ରିୟସଖୀଂ । ୩ ।

ତଦା ନିଷ୍ପନ୍ଦାଙ୍ଗୀ କଳିତନଳିନୀପଲ୍ଲବକୁଳୈଃ
ପରୀଣାହାତ୍ ପ୍ରେମ୍ଣାମକୁଶଳଯୁତାଶଙ୍କି ହୃଦୟେ ।
ଦୃଗନ୍ତ୍ୟା ଗମ୍ଭୀରୀକୃତ ମିହିରପୁତ୍ରୀଲହରିଭି—
ର୍ବିଲୀନା ତୂଲୀନାମୁପରି ପରିବବ୍ରେ ପରିଜନୈଃ । ୪ ।

ତତସ୍ତାଂ ନ୍ୟସ୍ତାଙ୍ଗୀ ମୃରସିଲନିତାସ୍ତାଃ କମଲିନୀ—
ର୍ଦଳାଗ୍ରୈଃ କାଳିନ୍ଦୀସଲିଳଶିଶିରୈର୍ବୀଜିତତନୁଂ ।
ପରିବୃତ୍ତଶ୍ୱାସାଙ୍କୁରକଳିତକଣ୍ଠୀଂ କଳୟତାଂ
ସଖୀ ସନ୍ଦେହାନାଂ ପ୍ରମଦଭରଶାଳୀ ଧ୍ୱନିରଭୂତ୍ । ୫ ।

ସଇଁଶରେଣ

ନିଧାୟାଙ୍କେ ପଙ୍କେରୁହଦଳବଟଙ୍କସ୍ୟ ଲଳିତା ।
ତତୋ ରାଧାଂ ମାରାହ୍ୱରଣସରଣୀ ନ୍ୟସ୍ୟ ଚରଣୌ ॥
ମିଳନ୍ତୀଂ କାଳିନ୍ଦୀ ପୁଳିନଭୁବି ଖେଳାଞ୍ଚିତଗତିଂ ।
ଦଦର୍ଶାଗ୍ରେ କଞ୍ଚିନ୍ମଧୁରବିରୁତଂ ଶ୍ୱେତଗରୁତମ୍ । ୬ ।

ତଦାଲୋକୋତ୍ସେକୋଚ୍ଛ୍ୱାସିତ ହୃଦୟା ସାଦରମସୌ ।
ପ୍ରଣାମଂ ଶଂସନ୍ତୀ ଲଘୁ ଲଘୁ ସମାସାଦ୍ୟ ସବିଧଂ ॥
ଧୃତୋତ୍କଣ୍ଠା ସଦ୍ୟୋ ହରିସଦସି ସନ୍ଦେଶହରଣେ
ବରଂ ଦୂତଂ ମେନେ ଭ୍ରମିତଲଳିତଂ ହନ୍ତ ଲଳିତା । ୭ ।

ଅମର୍ଷାତ୍ପ୍ରେମେଷାଂ ସପଦି ବିଧତ୍ତ କଂସମଥନେ ।
ପ୍ରବୃତ୍ତ ହଂସାୟ ସ୍ୱମଭିଲଷିତଂ ଶଂସିତୁମସୌ ॥
ନ ତସ୍ୟା ଦୋଷୋଽୟଂ ଯଦି ଚ ବିହଗଂ ପ୍ରାର୍ଥିତବତୀ ।
ନ କସ୍ମିନ୍ ବିଶ୍ରମ୍ଭଂ ଦିଶତି ହରିଭକ୍ତିପ୍ରଣୟିତା । ୮ ।

ପଙ୍କେଷୁ ପ୍ରାୟୋ ବିରତମପି ତୋୟେଷୁ ବସନ୍ତଂ ।
ପ୍ରମୋଦଂ ନାଳୀକେ ବହସି କ୍ଷଣଦାସ୍ୱା ସ୍ୱପୁମସି ॥
ତତୋଽହଂ ଦୁଃଖାର୍ତ୍ତା ଶରଣମବଳା ତ୍ୱାଂ ଗତବତୀ ।
ନ ଭିକ୍ଷା ସତ୍ପକ୍ଷେ ବ୍ରଜତି ହି କଦାଚିଦ୍‌ବିଫଳତାଂ । ୯ ।

ଚିରଂ ବିସ୍ମୃତ୍ୟାସ୍ମିନ ବିରହଦହନଜ୍ୱାଳବିକଳାଃ ।
କଳାବାନ୍ ସାନନ୍ଦଂ ବସତି ମଥୁରାୟାଂ ମଧୁରିପୁଃ ॥
ତଦେନଂ ସନ୍ଦେଶଂ ସ୍ୱମନସି ସମାରୋପ୍ୟ ନିଖିଳଂ ।
ଭବାନ୍ କ୍ଷିପ୍ରଂ ତସ୍ୟ ଶ୍ରବଣପଦବୀଂ ସଂଗମୟତୁ । ୧୦ ।

ନରସ୍ତ ପ୍ରତ୍ୟୂହଂ ଭବତୁ ଭବତୋ ବର୍ତ୍ମନି ଶିବଂ ।
ସମୃଦ୍ଧିସ୍ତୁ କ୍ଷିପ୍ରଂ ମନ ମୁଦମାଧାସ୍ୟ ସଦୟଂ ॥
ଅଧାସ୍ତ୍ରାଢାବନ୍ତ୍ୟୋ ଲଘୁଲଘ୍ ସମ୍ମୁଖନନସୁନୈ-
ର୍ଭବନ୍ତଂ ଗଚ୍ଛନ୍ତଂ କୁତୁକତରଳା ଗୋପଶିଶବଃ । ୧୧ ।

କଟଶାଗ୍ରେତ୍ତଂସୋଽସୌ କଠିନମତନା ଦାନପତନା ।
ଯସ୍ୟା·ନଚେ୍ୟ ତୃଣ୍ମଂ ପଶୁପରମଣୀନ୍ୱାବଚପତ୍ତଃ ॥
ତସ୍ୟା ଗନ୍ତବ୍ୟା ତେ ନଖିଳଜଗଦେକପ୍ରଥିତସ୍ୟା ।
ପଦବ୍ୟା ଭବ୍ୟାନାଂ ତିଳକ କଳ ଦ ସାର୍ହନଗସ୍ଥ । ୧୨

ଗଳଦ୍ବାଷ୍ପସ୍ରୋତସ୍ତ୍ରୁତଧବଳଗଣ୍ଡା ମୃଗଦୃଶୋ ।
ବିଦୂସ୍ୟନ୍ତେ ଯତ୍ର ପ୍ରବଳମଦନା ବେଶବ୍ୱବଶାଃ ॥
ଭଯ୍ୱା ବଞ୍ଚିତବ୍ୟା ହରିଚରଣସଙ୍ଗପ୍ରଣୟିନୋ ।
ଧ୍ରୁବଂ ସା ଚଣ୍ଡାଙ୍ଗୀ ରତିଦଖିସିତାଙ୍ଗସ୍ୟ ପଦବୀ । ୧୩ ।

ପିବନ୍ ଜମ୍ବୁଶ୍ୟାମଂ ମିହିରଦୁହିତୁର୍ବାଶମଧୁରଂ ।
ମୃଣାଳୀଭୃଙ୍ଗାନୋ ହିମକରକଳାଃ କୋମଳରୁଚଃ ॥
କ୍ଷଣଂ ହୃଷ୍ଟସ୍ତିଷ୍ଠନ୍ ନବଭ ବଶିଖେ ଶାଖିନଶିଖେ ।
ସୁଖେନ ପ୍ରସ୍ଥାନଂ ରଚୟତୁ ଭବାନ୍ ବୃନ୍ଦନଗରେ । ୧୪ ।

ବଳାଦାକନ୍ଦନ୍ତୀଂ ରଥପଥିକମକ୍ରୂର ମିଳିତଂ ।
ବିଦୂରଦାଖିସାତତ୍ତରନୁଯଯୌ ଯେନ ରମଣଂ ॥
ତମାଦୌ ପନ୍ଥାନଂ ରଚୟ ଚରିତାର୍ଥା ଭବତୁ ତେ ।
ବିରାଜନ୍ତେ ସର୍ବୋପରି ପରମହଂସସ୍ଥିତିରସ୍ୟମ୍ । ୧୫ ।

ଅଣସ୍ଥଳଶ

ଅକସ୍ମାଦସ୍ମାକଂ ହରିରପହରନ୍ନଶୁଂକଭରଂ ।
ସମାରୂଢୋ ରୂଢପ୍ରଣୟୁଲହସ୍ତଃ କନ୍ଦଳୟିତୁଂ ॥
ତ୍ୱବସ୍ତ୍ରାନ୍ତସ୍ୟାନ୍ତଃ ସ୍ଥଗିତରବିବିମ୍ବଃ କଣଳବୈଃ ।
କଦମ୍ବଃ କାଦମ୍ବ ! ତ୍ରିଶତମବଲମ୍ବଃ ସଭବତା । ୧୬ ।

କରନ୍ତୀ ଲବଣ୍ୟଂ ଦଶିଦଶି ଶିଖଣ୍ଡିସ୍ତବକନାଂ ।
ଦଧାନା ସାଧୀୟଃ କନକକମଳଦ୍ୟୋତିବସନଂ ॥
ତମାଳ ଶ୍ୟାମାଙ୍ଗୀ ସରଳମୁତ୍କଲୀଚୁମ୍ବିତମୁଖୀ ।
ଜଗୌ ଚଣ୍ଡଂ ଯତ୍ର ପ୍ରକଟପରମାନନ୍ଦ-ଲହରୀ । ୧୭ ।

ତସ୍ୟାଭୂୟଃ କ୍ରୀଡାରଭସବିକସଦ୍‌ବଲ୍ଲଭବଧୂ-
ବପୁର୍ବଲ୍ଲୀ-ଭ୍ରସ୍ୟନ୍ ମୃଗମଦକଣ-ଶ୍ୟାମଳକୟା ।
ସ୍ୱଧାତବ୍ୟା ହଲ୍ଲୀଷକଦଳିତ ମଲ୍ଲୀଲତିକୟା ।
ସମନ୍ତାଦୁଲ୍ଲସନ୍ତିବ ମନସି ଵଧସ୍ତଳକୟା । ୧୮ ।

ତଦନ୍ତେ ବାସନ୍ତୀବରଶତମନଙ୍ଗୋତ୍ସବକଳା
ଚତୁଃଶାଳଂ ଶୌରେଃ ସ୍ଫୁରତି ନ ଦୃଶୌ ତସ୍ୟ ସ୍ୱକରେଃ ।
ତଦା ଲୋକୋଦ୍ଭେଦିପ୍ରମଦଭରବିସ୍ଫାରିତଗତି—
ଝେପ୍ୟ ଜାତେ ତାବତ୍ତ୍ୱ୍ୟପି ବତ ହତା ଗୋପବନିତାଃ । ୧୯ ।

ମମ ସ୍ୟାଦର୍ଥାନାଂ କ୍ଷତିରିହ ବିଳମ୍ବାଦ୍ ଯଦପି ତେ ।
ବିଲୋକୋଥାଃ ସର୍ବଂ ତଦପି ହରିକେଳିସ୍ଥଳମିଦଂ ॥
ତବେୟଂ ନ ବ୍ୟର୍ଥା ଭବତୁ ଶୁଚିତା କଃ ସନ୍ଧୁ ସଖେ ।
ଗୁଣୋ ନ ଷ୍ଟାଣୁରଦ୍ଧିଷି ମଦନବେଶାସ୍ତୁ ନ ଭବେତ୍ । ୨୦ ।

ବ୍ଲକଶ

ସକୃଦ୍ ବଂଶୀନାଦଶ୍ରବଣମିଳିତାଖିଳବନିତା—
ରତଃ କ୍ରୀଡ଼ାସାକ୍ଷୀ ପ୍ରଣୟଦଲତା ସଦ୍ମ ସୁଭଗଃ ।
ସ ଧେନୂନାଂ ବନ୍ଧୁର୍ମଧୁମଥନଖଟ୍ବାୟିତଶିଳଃ
କରିଷ୍ୟତ୍ୟାନନ୍ଦଂ ସପଦି ତବ ଗୋବର୍ଦ୍ଧନଗିରିଃ । ୨୧ ।

ତମେବାଦ୍ରିଂ ଚନ୍ଦ୍ରାଙ୍କିତକରପରିଷ୍ବଙ୍ଗରସିକଂ
ମହୀ ତନ୍ୱେ ଶଙ୍କେ ମହୀଶିଖରିଣାଂ ଶେଖରତୟା ।
ଅବାପ୍ତଂ ଜ୍ଞାତୀନାଂ ନନୁ ହରିଦସୂଂ ଯଃ ପରିଭବନ୍
ଯଥାର୍ଥଂ ସ୍ବଂ ନାମ ବ୍ୟଧିତ ଭୁବି ଗୋବର୍ଦ୍ଧନ ଇତି । ୨୨ ।

ତମାଳସ୍ୟାଲୋକାଦ୍ ଗିରିପରିସରେ ସନ୍ତି ଚପଳାଃ
ପୁଳନ୍ଦ୍ୟୋ ଗୋବିନ୍ଦ ସ୍ମରଣ ରଭସୋତ୍ତପ୍ତ ବପୁଷଃ ।
ଶନୈସ୍ତାସାଂ ତାପଂ କ୍ଷଣଽପନୟନ୍ ଯାସ୍ୟତି ଭବା-
ନବଶ୍ୟ କାଳିନ୍ଦୀସଲିଳଶିଶିରୈଃ ପକ୍ଷପବନୈଃ । ୨୩ ।

ତଦନ୍ତେ ଶ୍ରୀକାନ୍ତସ୍ମରସମରଧାଟୀପୁଲକିତା
କଦମ୍ବାନାଂ ବାଟୀ ରସିକ ପରିପାଟୀଂ ସ୍ଫୁଟୟତି ।
ଉଦାସୀନସ୍ତାସାଂ ନ ଯଦି ପରିତୋ ନନ୍ଦସି ତତୋ
ବଭୂବ ବ୍ୟର୍ଥା ତେ ଘନରସ-ନିବାସ-ବ୍ୟସନିତା । ୨୪ ।

ଶରନ୍ ମେଘଶ୍ରେଣୀ-ପ୍ରତିଭଟମରିଷ୍ଟାସୁରଶିର-
ସ୍ଥିରଂ ଶୁଷ୍କଂ ବୃନ୍ଦାବନ-ପରିସରେ ଦ୍ରକ୍ଷ୍ୟତି ଭବାନ୍ ।
ଯଦାରୋହଂ ଦୂରାତ୍ ମିଳତି କିଲ କୈଳାସଶିଖର-
ଭ୍ରମାନ୍ଧାନ୍ତସ୍ବାନ୍ତୋ ଗିରିଶ-ସୁହୃଦଃ କିଙ୍କରଗଣଃ । ୨୫ ।

ଏକସ୍ଥଳଶ

ଭୁବନ୍ ଯାନ୍ତି ସ୍ୱୈରଂ ଚରମଦଶୟା ଚୁମ୍ବିତତନୁସ୍ତେ
ନିତମ୍ବିନ୍ୟୋ ବୃନ୍ଦାବନଭୁବି ସଖେ ! ସନ୍ତି ବହବଃ ।
ପରାବର୍ତ୍ତିଷ୍ୟନ୍ତେ ଭୁଜଗମ୍ବରଜନ୍ମୁପୁରରବାହ୍
ତବାଧ୍ୱ'ନାତ୍ମାସାଂ ବହ୍ୱିରପି ଗତାଃ କ୍ଷିପ୍ରମସବଃ । ୨୬ ।

ତ୍ୱମାସୀନଃ ଶାଖାନ୍ତର ମିଳିତ ଚନ୍ଦ୍ରାର୍ଚ୍ଚିଷି ସୁଖଂ
ଦଧୀଥା ଭାଣ୍ଡୀରେ କ୍ଷଣମପି ଘନଶ୍ୟାମଳରୁଚୌ ।
ତତୋ ହଂସୌ ବିଭ୍ରନ୍ନିଖିଳ ନଭସସ୍ଥି ନିମିଷସ୍ଥା
ସବର୍ଣ୍ଣିଷ୍ଣୁଂ ବିଷ୍ଣୁଂ ଦଳତଦର ତନ୍ତଂ ଭୁଜସୁତା । ୨୭ ।

ତମସ୍ତାଭର୍ନୈର୍ନୈର୍ବିରଳବମଳପ୍ରେମସଲିଳୈ-
ର୍ମୁହୁଃସିକ୍ତସ୍ତମ୍ଭାଂ ତଟୁର ତତ୍ତୁରାସ୍ୟ ସ୍ଥିତଭୂବଂ ।
କହ୍ମଥାଃ ବଖ୍ୟାତଂ ସ୍ଫୁଟମିହ ଭବଦବାଞ୍ଛବରଥଂ
ପ୍ରବିଷ୍ଟଂ ମଂସ୍ୟନ୍ତେ ଵିଧିମଠଵଦେବ୍ୟସ୍ତ୍ୱୟି ଗତେ । ୨୮ ।

ଉଦଞ୍ଚନ୍ନେନାମ୍ନଃ-ପ୍ରସରଳହରୀ-ପିଚ୍ଛିଳପଥ-
ସ୍ଖଳତ୍ ପାଦନ୍ୟାସ-ପ୍ରଣିହିତ-ବିଳମ୍ବାକୁଳଧିୟଃ —
ହରୌ ଯସ୍ମିନ୍ନଗ୍ରେ ଭଣତ ଯମୁନାକୂଳଗମନ—
ସ୍ପୃହାକ୍ଷିପ୍ତା ଗୋପ୍ୟୋ ଯଯୁରନୁପଦଂ କାମପି ଦଶାଂ । ୨୯ ।

ମୃଦୁର୍ଲାସ୍ୟକ୍ରୀଡ଼ା-ପ୍ରମଦମିଳଦାଭୋଗ୍ୟରୁଚିକା-
ଵିକାଶେନ, ଭ୍ରଷ୍ଟୈଃ ଫଣିମଣିକୁଳୈର୍ଦ୍ଧମଳରୁଚୌ ।
ପୁରସ୍ତସ୍ମିନ୍ନୀପଦ୍ରୁମକୁସୁମକଞ୍ଜଲ୍କସୁରଭୌ
ଭବ୍ୟା ପେୟଂ ପୁଣ୍ୟେ ମଧୁରମୁଦକଂ କାଳିୟହ୍ରଦେ । ୩୦ ।

ବସ୍ତ୍ୱାଳଣ

ତୃଣାବର୍ତ୍ତାରାତେର୍ବିରହଦବସନ୍ତାପିତତନୋଃ
ସଦାଶ୍ୱାସ୍ୱ ବୃନ୍ଦପ୍ରଣୟିବଦ୍ଧମାନୋନ୍ନତଖଦଃ ।
ଷ୍ଵଧାତବ୍ୟା ନଦ୍ୟସ୍ତବକଭରସମ୍ବର୍ଦ୍ଧିତଶୁଚ—
ସ୍ଥପ୍ସା ବୃନ୍ଦାଦେବ୍ୟାଃ ପରମଷ୍ଵନସ୍ଥାଦ୍‌ବନ୍ଦନଷ୍ଵୀଃ । ୩୧ ।

ଇତି ଷ୍ଵାନ୍ତ୍ୟା କେକାକୃତଷ୍ଵରୁତମେକାଦଶବନଂ
ଦମାଭୂତଂ ଚୂତେ ବ୍ରଜ ମଧୁବନଂ ଦ୍ୱାଦଶମିଦଂ ।
ପୁରୀ ଯସ୍ମିନ୍ନାସ୍ତେ ଯଦୁକୁଳଭୁବାଂ ନିର୍ମଳଯଶୋ—
ଭରାଣାଂ ଧାରାଭିର୍ଧବଳିତଧରିତ୍ରୀପରିସରା । ୩୨ ।

ନିକେତୈ ରାକୀର୍ଣ୍ଣା ଗିରିଶଗିରିଜାମୃପ୍ରଭୃତିଭଟୈ-
ରବଷ୍ଟମ୍ଭସ୍ତମ୍ଭାବଳିଷ୍ଵନ୍‌ସିତୈଃ ପୃଷ୍ଠିତବନା ।
ନିବିଷ୍ଟା କାଳିନ୍ଦୀତଟଭୁବି ରବାଧ୍ୱାସିତସଖେ
ସମନ୍ତାଦାନନ୍ଦଂ ମଧୁରଜନବୃନ୍ଦା ମଧୁପୁରୀ । ୩୩ ।

ବୃଷଃ ଶମ୍ଭୋର୍ଯସ୍ୟାଂ ଦଶତି ନବମେକନ୍ତ ଯବସଂ
ଷରଣ୍ଠୈରନ୍ୟସ୍ମିନ୍ ଗିଳତି କଳହଂସୋ ବିସଲତାଂ ।
କ୍ୱଚିତ୍ ଝିଁଝାରାତେଃ କବଳୟତି କେକୀ ବିଷଧରଂ
ବଲିତ୍ରେ ଶଲ୍ଲକ୍ୟା ବଳଶପୁକସ୍ତ ପଲ୍ଲବମିତଃ । ୩୪ ।

ଅବୋଧ୍ୱସ୍ଥାଃ କାସ୍ଥାନ୍ନସ୍ୱ ଷ୍ଵଗଳତାଂ ପ୍ରଚ୍ଛଦପଟୀଂ
ଷମୁକ୍ତାମଙ୍କାସୀଃ ପଥି ପଥି ନ ମୁକ୍ତାବଳିମପି ।
ଅପି ଶ୍ରୀଗୋବର୍ଦ୍ଧନଶ୍ରବଣମଦିରାମତ୍ତହୃଦୟେ !
ସଗ୍ଧାତ ଖ୍ୟାତିଂ ତେ ହସତି କୁଳଟାନାଂ କୁଳମିଦଂ । ୩୫ ।

ଭେଣ୍ଟୁଳିଶ

ଅସବ୍ୟଂ ବିଭ୍ରାଣା ପଦମଧୃତ ଲାକ୍ଷାରସମସୌ
ପ୍ରୟାତାହଂ ମୁଗ୍ଧେ ! ବିରମ ମମ ବେଶୈଃ କିମଧୁନା ।
ଅମନ୍ଦାଦାଶଙ୍କେ ସଖି ପୁରପୁରନ୍ଧ୍ରୀ କଳକଳା—
ଦଳନ୍ଧାଗ୍ରେ ବୃନ୍ଦାବନକୁସୁମଧନ୍ୱା ବ୍ରଜସୁତେ । ୩୬ ।

ଅୟଂ ଲୀଳାପାଙ୍ଗସ୍ନପିତପୁରବୀଥୀ ପରିସରେ ।
ନବାଶୋକୋତ୍ତଂଧସ୍ଥଳନ୍ତ ପୁରତଃ କଂସବିଜୟୀ ।
କିମସ୍ମାନେତସ୍ମାନ୍ମଣିଭବନପ୍ରୁଷ୍ଟୁ ଦ୍ୱିବନୁଦଣ୍ଡ
ତ୍ୱମେକା ସ୍ଥବ୍ଧାକ୍ଷୀ ସ୍ଥଗୟସି ଗବାକ୍ଷାବଳିମପି । ୩୭ ।

ମୁହୁଃ ସ୍ତୈନ୍ୟାଂ ଦୃଷ୍ଟିଂ ବହସି ରହସି ଧ୍ୟାୟସି ସଦା
ଶୃଣୋଷି ପ୍ରତ୍ୟକ୍ଷଂ ନବପରିଜନଜ୍ଞାପନଶତଂ ।
ତତଃ ଶଙ୍କେ ପଙ୍କେରୁହଦଳମୁଖୀ ଶ୍ୟାମଳରୁଚଃ
ସ ଯନ୍ନାମୋତ୍ତଂସ-ସ୍ତବନପୁନବୀଥୀପଥିକତାଂ । ୩୮ ।

ବିଲକ୍ଷଂ ମାରେଣାରବ୍ଧ ସଖି ପୁନର୍ଯାସ୍ୟନ୍ତ ଦ୍ୱର—
ସ୍ତବାପାଙ୍ଗ କ୍ରୀଡ଼ା-ନବଡ଼ପରିଚର୍ଯ୍ୟା ଗ୍ରହଣତାଂ ।
ଇତି ସ୍ୱୈରଂ ଯସ୍ୟା ପଥି ପଥି ମୁରାରେରଭିନବ —
ପ୍ରଦେଶେ ନାରୀଣାଂ ରତିରଭସଜଳ୍ପା ବବୃଧିରେ । ୩୯ ।

ସଖେ ସାକ୍ଷାଦ୍ଦାମୋଦରବଦନଚନ୍ଦ୍ରାବକଳନଂ
ସ୍ଫୁରତ୍ ପ୍ରେମାନନ୍ଦ-ପ୍ରକରଲହରୀ-ଚୁମ୍ବିତଧିୟଃ ।
ମୁହୁସ୍ତସ୍ୟାଶୀସମ୍ପଦସ୍ମ-ଶିରୋନ୍ୟସ୍ତ ବିପଦ—
ସ୍ତବାଷ୍ଟ୍ରୋଣୋସ୍ରନନ୍ଦଂ ବିଦଧତି ପୁରା ପୌରବନିତା । ୪୦ ।

ଚନ୍ଦ୍ରସାଳାଶ

ଅଥ କ୍ଷାମଂ କ୍ଷାମଂ କ୍ଷମଘଟନୟା ସଙ୍କଟତୟା—
ନ୍ନିବାଧାନ୍ ବୃଷ୍ଟୀନାମନୁସର ପୁଷ୍ପମଞ୍ଜ ବସିତାଂ ।
ମ୍ନଗରତେର୍ଯତ୍ର ସ୍ଥଗିତଗଣନାଭିର୍ବିଜୟତେ
ପତାକାଭିଃ ସନ୍ତର୍ପିତ ଭବନମନ୍ତଃ ପୁରବରଂ । ୪୧ ।

ଯଦୁତ୍ତୁଙ୍ଗେ ତୁଙ୍ଗସ୍ଫଟିକରଚିତାଃ ସନ୍ତି ପଟବୋ
ମରାଳା ମାଣିକ୍ୟପ୍ରକର ଘଟିତ କୌଞ୍ଚଚରଣାଃ ।
ସୁହୃଦ୍ବୁଦ୍ଧ୍ୟା ହଂସାଃ କଳିତ ମଥୁର ସ୍ୟାମ୍ବୁଜଭୁବଃ
ସ୍ୱମର୍ଯ୍ୟାଦାଂ ଯୋଷାଂ ସପଦି ପରିଚର୍ଯ୍ୟାଂ ବିଦଧତି । ୪୨ ।

ଚିରାନ୍ମୃଗ୍ୟନ୍ତୀନାଂ ପଶୁପରମଣୀନାମଟିକୁଳୈ—
ରଲବ୍ଧଂ କାଳନ୍ଦୀ ପୁଳିନ-ବିପିନେଲ୍ଲୀନମଭିତଃ ।
ସଦା ଲୋକୋଲ୍ଲାସ-ସ୍ମିତପରିଚିତାସ୍ୟଂ ସହଚରୈ
ସ୍ଫୁରନ୍ତଂ ବକ୍ଷିଷ୍ୟେ ପୁନରପି କଦମ୍ବେ ମୁରଭିଦଂ । ୪୩ ।

ବିଷାଦଂ ମାକାର୍ଷୀ ଦ୍ରୁତମବିତଥବ୍ୟାହୃତରସୌ
ସମାଗନ୍ତାରାଧେ ଧୃତନବଶିଖଣ୍ଡସ୍ତବ ସଖା ।
ଇତି ବ୍ରୂତେ ଯସ୍ୟାଂ ଶୁକମିଥୁନମିନ୍ଦ୍ରାନୁଜରୁଚେ
ଯଦାଶ୍ରାଶ୍ରବୃନ୍ଦୈ ରୁପଧୃତମଭୂଦ୍ ବଲ୍ଲବକରେ । ୪୪ ।

ଘନଶ୍ୟାମଭ୍ରାମ୍ୟତ୍ୟୁପରି ହରହର୍ମ୍ୟସ୍ୟ ଶିଖିଭିଃ
କୃତ ସ୍ତ୍ରୋତା ମୁଗ୍ଧୈରଗୁରୁରଚିତା ଧୂମଲତିକା ।
ତଦାଲୋକାଦ୍ଧୀର ସ୍ଫୁରତି ତବ ଚେତ୍ ମାନସରୁଚି—
ର୍ଜିତଂ ତର୍ହି ସ୍ୱୈରଂ ଜଳସହନବାସ ପ୍ରବିଶତସ୍ମା । ୪୫ ।

ତତୋ ମଧ୍ୟେ କକ୍ଷଂ ପ୍ରଣତନବଗବାକ୍ଷସ୍ତବକିନଂ
ଚଳନ୍‌ମୁକ୍ତାଲମ୍ବସ୍ଫୁରିତମମଳସ୍ତମ୍ଭନିବହଂ ।
ଭବାନ୍‌ ଦ୍ରଷ୍ଟା ହେମୋଲ୍ଲିଖିତ ଦଶମସ୍କନ୍ଧଚରିତୋ
ଲ୍ଲସଦ୍ଭିତ୍ତିପ୍ରାନ୍ତଂ ମୁରବିଜୟିନଃ କେଳିନିଳୟଂ । ୪୬ ।

ଅଳିନ୍ଦେ ଯସ୍ୟାସ୍ତେ ମରକତମୟୀ ଯଷ୍ଟିରମଳା
ଶୟାଳୁର୍ଯାଂ ରଙ୍ଗୀ ମଦକଳକଳାପୀ କଳୟତି ।
ନିଶାନ୍ତସ୍ତସ୍ୟାଃ ଶିଖରମଧିରୁହ୍ୟ ଭ୍ରମନଦଂ
ପ୍ରଣିକ୍ଷେଥା ଭ୍ରାତର୍ବରମବସରଂ ଯାଦବପତେଃ । ୪୭ ।

ନିବିଷ୍ଟଃ ପଲ୍ୟଙ୍କେ ମୃଦୁଳତର ତୂଳୀ ଧବଳିତେ
ତ୍ରିଲୋକୀଲକ୍ଷ୍ମୀନାଂ କକୁଦ ଦରସାଚୀକୃତତନୁଃ ।
ଅମନ୍ଦଂ ଚୂର୍ଣ୍ଣେନ୍ଦ୍ରପ୍ରତିମମୁପଧାନଂ ପ୍ରମୁଦିତୋ
ନିଧାୟାଗ୍ରେ ତସ୍ମିନ୍‌ପ୍ରସ୍ଫୁଟକଫୋଣିଦ୍ୱୟଭରଃ । ୪୮ ।

ଉଦଞ୍ଚତ କାଳିନ୍ଦୀ-ସଲିଳ-ସୁଭଗଂ ଭାବୁକରୁଚିଃ
କପୋଳାନ୍ତଃ-ପ୍ରେଙ୍ଖନ୍‌ମଣି-ମକର-ମୁଦ୍ରାମଧୁରିମା ।
ବସାନଃ କୌଷେୟଂ ଜିତ-କନକଲକ୍ଷ୍ମୀପରିମଳଂ
ମୁକୁନ୍ଦସ୍ତେ ସାକ୍ଷାତ୍‌ ଭ୍ରପଦ ସୁଧୟା ସେକ୍ଷତି ଦୃଶୌ । ୪୯ ।

ସ୍ୱକର୍ଣ୍ଣ ପୌରାଣୀରଖିଳକୁଳବୃଦ୍ଧୋ ଯଦୁପତେ—
ରଦୂରଦାସୀନୋ ମଧୁର-ଭଣିତର୍ଗାସ୍ୟନ୍ତି ସଦା ।
ପୁରସ୍ତାଦାସ୍ଥାସ୍ୟଗଣଭୟୂଦନାମା ସ କଠିନୋ
ମଣିସ୍ତମ୍ଭାଲମ୍ବୀ କୁରୁକୁଳକଥାଂ ସଙ୍କଳୟିତା । ୫୦ ।

ଶିରଣାମୃତଂସଃ କଳତ କୃକବର୍ମାପ୍ୟଲ୍ଭଯୁତଃ
ସ୍ଫୁଣେଟ୍ଟ୍ୟରେ ବାଳବ୍ୟଜନଯୁଗଳାନ୍ଦୋଳନବଧ୍ୟଂ ।
ସଜାନୁଭ୍ୟାମସ୍ତାତଦଭ୍ରୁବମବଷ୍ଟଭ୍ୟ, ଭବତା
ପୁରଃ ଶିଷ୍ୟୋ ନୂନଂ ପଦକମଳସମ୍ବାହନରତଃ । ୫୧ ।

ଖଗେନ୍ଦ୍ରୋ ସ୍ୱଗ୍ରୀକୃତ-କଟସଙ୍ଗେକୋଦ୍ଭବ ପୁରଃ
କୃତାସଙ୍ଗୋ ଭାବୀ ପ୍ରଜବନନ ଦେଶେଽପିତମନାଃ ।
ଛଦଦ୍ୱନ୍ଦେ ଯସ୍ୟ ଧ୍ୱନତି ମଥୁରାବାସିବଣ୍ଟବୋ
ବ୍ୟୁଦସ୍ୟନ୍ତେ ସାମାସ୍ୱର ଜନିତ ମନୋଽନ୍ୟ କଳହଂ । ୫୨ ।

ନ ନିବକ୍ତଂ ଦାମୋଦର ପଦକନସ୍ଥାଙ୍ଗୁଳନଖ—
ଦ୍ୟୁଣାନାଂ ଲବଣ୍ୟଂ ଭବତି ଚତୁରସ୍ୟୋଽପି ଚତୁରଃ ।
ତଥାପି ସ୍ତ୍ରୀ ପ୍ରଜ୍ଞାସୁଲଭ ତରଳତ୍ତୁଦହମସୌ
ପ୍ରବୃତ୍ତ ଚନ୍ଦ୍ରୁତିଂ ସ୍ତୁବତି ଚ ମହାସଂହସବଶେ । ୫୩ ।

ଖରଜନ୍ତେ ଯସ୍ୟ ବ୍ରଜ ଶିଶୁକୁଳାସ୍ତେପୁ ଖକଳ-
ସ୍ୱପ୍ନମୃତ୍ତାଗ୍ରେଲୁଳିତଶିଖରାଃ ପାଦନଖରାଃ ।
କ୍ଷଣଂ ଯାନାନ୍ଦ୍ୟେକ୍ୟ ପ୍ରକଷ୍ଟପରମାନନ୍ଦବରସଃ
ସ ଦେବର୍ଷିର୍ମ୍ମ କ୍ରାନପି ତନୁଭୃତଃ ଶୋଚତିଃ ଭୃଶଂ । ୫୪ ।

ସରୋଜାନାଂ ବ୍ୟୁହଶ୍ରିୟମଭିନୟନ୍ ଯସ୍ୟପଦୟୋ-
ର୍ଯଂସୌ ରଗାତ୍ୟାନାଂ ଖଧିରମ୍ବୁଦବାସବ୍ରତବଧ୍ୟଂ ।
ସ୍ୱମଂବନ୍ଦେ ମାତିରନ୍ଚିତ ଖଧାନବ୍ୟସନଲାଂ
ଯଦେଷଂ ପ୍ରାଣାନ୍ତଂ ଦମନମନୁବର୍ଷଂ ସ୍ତ୍ରଣୟତି । ୫୫ ।

ସତଗ୍ଲକଣ

ରୁଚ୍ଚନାମୁଲ୍ଲାସୈମରକତମୟୂଖ୍ଲକକଦଳୀ—
କଦମ୍ବାଦ୍ବଙ୍କାରଂ କବଳୟତି ଯସ୍ୟୋରୁ ଯୁଗଳଂ ।
ଯଦାଳାନସ୍ତମ୍ଭାଦ୍ୟୁତ୍ତମବଲଲମ୍ବେ ବଳବତାଂ
ବଳାଦୁଦ୍‌ବାମାନାଂ ପଶୂପଶ୍ରମଣୀ ଚିତ୍ତକରିଣାଂ । ୫୬ ।

ସଖେ ! ଯସ୍ୟାସ୍ତ୍ରିସ୍ତନସ୍ପୁନଶଫସ୍ତାଜ୍ଞାବନବଧୌ
ନିଦାନଂ ଗାମ୍ଭୀର୍ଯ୍ୟ ତ୍ରସରକଳତା ନାଭିସରସୀ ।
ଯତଃ କଲ୍ପସ୍ୟାଦୌ ସକଳଜନକୋତ୍ପତ୍ତି ବଢ଼ିଷ୍ଣୁ
ଗଭୀରାନ୍ତଃ କଞ୍ଜାଧୃତ ଭୁବନମମ୍ଭୋରୁହମଭୂତ୍ । ୫୭ ।

ଦ୍ୟୁତିଂ ଧତ୍ତେ ଯସ୍ୟ ତ୍ରିବଳିଲତିକା ସକଂଠତରଂ
ସଖେ ଦାମଶ୍ରେଣୀ କ୍ଷପଣ ରଚନାଭିଜ୍ଞମୁଦରଂ ।
ଯଶୋଦା ଯସ୍ୟାନ୍ତଃ ସୁରନରଭୁଜଙ୍ଗୈଃ ପରିବୃତଂ
ମୁଖ ଦ୍ୱାରବାରଦ୍ଦ୍ୱୟୂମବଲ୍ଲୋକେ ତ୍ରିଭୁବନମ୍ । ୫୮ ।

ଉରେ ଯସ୍ୟ ସ୍ଫାରଂ ସ୍ଫୁରତି ବନମାଳା ବଳୟିତଂ
ବିତନ୍ୱାନ ତନ୍ୱୀ ଜନମନସି ସଦ୍ୟୋମନସିଜଂ ।
ମଣିଶ୍ରେଣିର୍ନାସ୍ପିନ୍‌ରବନ୍ଧବନ୍ଧତ୍ତୁଲ୍ୟୋଽପି ବହତେ
ସଦା ଖଦ୍ୟୋତାଭାଂ ଭୁବନମଧୁରଃ କୌସ୍ତୁଭମଣିଃ । ୫୯ ।

ସମନ୍ତାଦ୍ୱୁନ୍ନୀଳଦ୍ ବଳଭିଦୁପଳସ୍ତମ୍ଭଯୁଗଳଂ
ପ୍ରଭଞ୍ଜେଶଂ କେଶିଦ୍ୱିଜଦଳିତ କେୟୂରଲଳିତଂ ।
ମଦକ୍ଲାମ୍ୟଦ୍‌ଗୋପୀପଟଳ-ହଠକଣ୍ଠ ଗ୍ରହଭାରଂ
ଭୁଜଦ୍ୱନ୍ଦଂ ଯସ୍ୟ ସ୍ଫୁଟ ସୁରଭିଗନ୍ଧଂ ବ୍ରଜପୁରେ । ୬୦ ।

ଜାଗ୍ରତେ ସାମ୍ରାଜ୍ୟଂ ଜଗତି ନବଲାବଣ୍ୟଲହରୀ-
ପରୀପାକସ୍ୟାନ୍ତସ୍ମିତମଦନାବେଶ ମଧୁରଂ ।
ନଟଦ୍ଭ୍ରୂବଲ୍ଲୀକଂ ସ୍ମିତନବସୁଧା-କେଳିସଦନଂ
ସ୍ଫୁରନ୍ ମୁକ୍ତା ପଂକ୍ତିପ୍ରତିମରଦନଂ ଯସ୍ୟ ବଦନଂ । ୬୧ ।

କମେଭିର୍ବ୍ୟାହାରୈଃ କଲୟୁକଥୟାମି ସ୍ଫୁଟମହଂ
ସଖେ ! ନଃସନ୍ଦେହଂ ପରିଚୟପଦଂ କେବଳମିଦଂ ।
ପରାନନ୍ଦୋ ଯସ୍ମିନ୍ ନୟନପଦବୀଭ୍ରାଜି ଭବତା
ଲୁପ୍ତା ବିଜ୍ଞାତବ୍ୟୋ ମଧୁରରବ ! ସୋଽୟଂ ମଧୁରିପୁଃ । ୬୨ ।

ଝଲେଲ୍କେଥାଃ କୃଷ୍ଣଂ ମଦକଳମରାଳୀ- ରତିକଳା-
ବିମୁଗ୍ଧବ୍ୟାମୁଗ୍ଧଂ ଯଦ୍ଧପୁରବଧୂ ବିଭ୍ରମଭରୈଃ ।
ତଦାନାସ୍ମାନ୍ ଗ୍ରାମ୍ୟାନ୍ ଶ୍ରବଣ ପଦବୀଂ ତସ୍ୟ ଗମୟେଃ
ସୁଧାପୂର୍ଣ୍ଣଂ ଚେତଃ କଥମପି ନ ତଙ୍କ ମୃଗୟତେ । ୬୩ ।

ଯଦା ବୃନ୍ଦାରଣ୍ୟସ୍ଫୁରଣଲହରୀ ହେତୁରମଣଂ
ପିକାନାଂ ବେବେଷ୍ଟି ଧୃତିହରତିମୁକ୍ତୈଃ କୁହୁରୁତଂ ।
ବହନ୍ତେ ବା ବାତଃ ସ୍ଫୁରତି ଗିରିମଲ୍ଲୀ-ପରିମଳ
ସ୍ତବୈର୍ବାସ୍ମାକୀନାଂ ଗିରମୁପହରେଥାଃ ମୁରଭିଦି । ୬୪ ।

ପରାର୍ତିଷ୍ଠାନ୍ ଗୋଷ୍ଠାନ୍ନିଖିଲରମଣୀଭ୍ୟଃ ପ୍ରିୟତୟା
ଭବାନ୍ ଯସ୍ୟା ଗୋପୀରମଣ ବଦଧେ ଗୌରବଭରଂ ।
ସଖୀ ତସ୍ୟା ବିଜ୍ଞାପୟତି ଲଳିତା ଧୀରଲଳିତା
ପ୍ରଣମ୍ୟ ଶ୍ରୀପାଦାମ୍ବୁଜ-କନକପୀଠୀ-ପରିସରେ । ୬୫ ।

ଅଣରୂଣ

ପ୍ରଫୁଲ୍ଲାଦାବାଲ୍ୟଂ ନବକମଳିନୀ-ପଲ୍ଲବକୁଲୈ-
ସ୍ନୁସ୍ନା ଭୂୟୋ ଯସ୍ୟାଃ କୃତମହହ ! ସମ୍ବର୍ଦ୍ଧନମଭୂତ୍ ।
ଶଶ୍ୱଦ୍ଗନ୍ଧୋଦ୍ଗାରସ୍ଫୁରଣ ପରମାନନ୍ଦଜନନା
ବଭୂବ ପ୍ରସ୍ତୋଧ୍ନୀ ସ୍ମରମଥନ ସେୟଂ କପିଳିକା । ୬୬ ।

ସମୀପେ ନୀପାନାଂ ସ୍ଥିତତ୍ତୁରଦଳା ହସ୍ତଗମିତା
ରୁଷ୍ଟା ଯା ମାକନ୍ଦ ପ୍ରିୟସହଚରସ୍ଥ ଭାବନ୍ୟୁକ୍ତିଃ ।
ଇୟଂ ସା ବାସନ୍ତୀ ଗଳଦମଳମାଧ୍ୱୀକ ପଟଳୀ-
ମିଷାଦଗ୍ରେ ଗୋପୀରମଣ ! ରୁଦନ୍ତୀ ରୋଦୟତି ନଃ । ୬୭ ।

ପ୍ରସୂତୋ ଦେବକ୍ୟା ମଧୁମଥନ ଯଃ କୋଽପି ପୁରୁଷଃ
ସ ଯାତୋ ଗୋପାଳାଭ୍ୟୁଦୟ ପରମାନନ୍ଦବସତିଂ ।
ଧୃତୋ ଯୋ ଗାନ୍ଧିନ୍ୟାଃ କଠିନ ଜଠରେ ସପ୍ରତି ତତଃ
ସମନ୍ତାଦେବାସ୍ତଂ ଶିବଶିବ ଗତା ଗୋକୁଳକଥା । ୬୮ ।

ଅରିଷ୍ଟେନାଢୂତଃ ପଶୁପସୁହୃଦଶୋ ଯାନ୍ତୁ ଶ୍ୱପଦଂ
ତୃଣାବର୍ତ୍ତଧ୍ୱାନ୍ତୋ ଗତଯୁତି ଭୟଂଚଣ୍ଡରଚୟଃ ।
ଅମର୍ବ୍ୟୋମୀଭୂତା ବ୍ରଜବସତିଭୂମୀପରିସରା
ବହନ୍ତେ ସନ୍ତୋଷଂ ମୁରହର ! ସୁଦୂରଂ ତ୍ୱୟି ଗତେ । ୬୯ ।

ତ୍ୱୟାନାଗନ୍ତବ୍ୟଂ କଥମପି ହରେ ! ଗୋଷ୍ଠମଧୁନା
ଲତାଶ୍ରେଣୀ ବୃନ୍ଦାବନଭୁବ ଯତୋଽଭୂଦ୍ୱନମୟୀ ।
ପ୍ରସୂନାନାଂ ଗନ୍ଧଂ ମଧୁମଥନ ! ତଦ୍ବାତନହତଂ
ଭଜନ ସଦ୍ୟୋମୂର୍ଚ୍ଛାଂ ବହତି ନିବହୋ ଗୋପସୁହୃଦାଂ । ୭୦

ପଲ୍ଲଶ

କଥଂ ସଙ୍ଗୋଽସ୍ମାଭିଃ ସହସାମୃଶତଃ ସଂପ୍ରତି ହରେ
ବୟଂ ଗ୍ରାମାନାର୍ଯ୍ୟାସ୍ତ୍ୱମପିନୃପକନ୍ୟାର୍ଚ୍ଚିତପଦଃ ।
ଗତଃ କାଳୋ ଯସ୍ମିନ୍ ପଶୁପରମଣୀ-ସଙ୍ଗମକୃତେ
ଭବନ୍ ବ୍ୟଗ୍ରସ୍ତସ୍ମୌ ତମସିଗୃହବାଟୀ-ଵଟପିନଃ । ୭୧ ।

ବୟଂ ତ୍ୟକ୍ତ୍ୱା ସ୍ୱାମିନ୍ ! ଯଦିହ ତବ କଂ ଦୂଷଣମିଦଂ
ନିସର୍ଗଃ ଶ୍ୟାମାନାମୟମତିତରାଂ ଦୁଷ୍ପରିହରଃ ।
କୁହୁକଣ୍ଠୈରଣ୍ଡାବଧିସହନବାସାତ୍ ପରିଚିତା
ଵିସୃଜ୍ୟନ୍ତେ ସଦ୍ୟଃ କଳିତନବପକ୍ଷୈର୍ବଳଭୂଜଃ । ୭୨ ।

ଅୟଂ ପୂର୍ବୋରଙ୍ଗଃ କିଳ ପରିଚିତୋ ଯସ୍ୟ ତବ ସା
ରସାଦାଖ୍ୟାତବ୍ୟଂ ପରିକଳୟ ତନ୍ନାଟକମିଦଂ ।
ମୟା ପ୍ରଷ୍ଟବ୍ୟୋଽସି ପ୍ରଥମମିତି ବୃନ୍ଦାବନପତେ !
କିମାହୋ ରାଧେତି ସ୍ମରସି ହତ ! କିଂ ବର୍ଣ୍ଣଯୂଗଳଂ । ୭୩ ।

ଅୟେ କୁଞ୍ଜଦ୍ରୋଣୀକୁହରଗୃହମେଧୀନ୍ କିମଧୁନା
ପରୋକ୍ଷଂ ବକ୍ଷ୍ୟନ୍ତେ ପଶୁପରମଣୀ ଦୁର୍ନିୟତୟଃ ।
ପ୍ରବୀଣା ଗୋପୀନାଂ ତବଚରଣ-ପଦ୍ମେଽପି ଯଦିୟଂ
ଯଯୌ ରାଧା ସାଧାରଣ ସମୁଚିତପ୍ରଶ୍ନପଦବୀଂ । ୭୪ ।

ମୟା ବାଚ୍ୟଃ କିଂବା ତ୍ୱମିହ ନିଜଦୋଷାତ୍ ପରମସୌ
ଯଯୌ ମନ୍ଦା ବୃନ୍ଦାବନକୁସୁମବନ୍ଧୋ ! ଵିଧୁରତାଂ ।
ଯଦର୍ଥଂ ଦୁଃଖାଚ୍ଚିର୍ବିକଶତି ତମଦ୍ୟାପି ହୃଦୟା
ନୃଯସ୍ମାଦ୍ଦୁର୍ମେଧାନରମପି ଭବନ୍ତଂ ଦରଯୁତି । ୭୫ ।

ତରଙ୍ଗୈକୁର୍ବାଣାଂ ଶମନନ୍ଦଗିମାଲଘବମସୌ
ନଦୀ କାଞ୍ଚିଦ୍ ଗୋଷ୍ଠେ ନୟନଜଳପୂରୈରଜନୟତ୍ ।
ଇଷ୍ଟାବାପ୍ୟାଦ୍ୱେଷାଦ୍ ବରମିହ୍ୱଦଶାଂ ପ୍ରାର୍ଥନମସ୍ମିଂ
ମୁରାରେ ବାଞ୍ଛନ୍ତିଂ କ୍ଷଣମପୃତି ମାମା ଚ ଶମନଃ ୬୭ ।

କୃତା କୁବ୍‌ଜକ୍ରୀଡ଼ା କମପି ତବରୂପଂ ମମ ସଖୀ
ସକୃଦ୍‌ଦୃଷ୍ଟ୍ୱା ଦୂରାଦସ୍ୱତନ୍ୱତବୋଧୋଜ୍‌ଝିତମତିଃ ।
ହୃତାସେସ୍ମଂ ପ୍ରେମାନଳମନୁବଧନ୍ତୀ ସରଭସଂ
ପତଙ୍ଗୀବାତ୍ମାନଂ ମୁରହର ! ମୁହୁର୍ଦ୍ଧାନ୍ୱିତବତୀ । ୭୭ ।

ବସନ୍ତେ ବାସନ୍ତୀ ମୃଦୁମଧୁରକାନ୍ତ୍ୟର୍ବିତନୁତେ
ସମୁଚ୍ଛନ୍ନଂ ଛନ୍ନଂ ହରିବରନ୍ୱଣୀ ଚଣ୍ଡମନଶମ୍ ।
ପ୍ରସୂନୈରାକୀର୍ଣ୍ଣଂ ରୁଚିରରୁଚିବୃନ୍ଦାବନମିଦଂ
ବିଲୋକ୍ୟୈନଂ କାଳଂ କଥମିହ କୃଶାଙ୍ଗୀ ବିଗମୟେତ୍ । ୭୮ ।

ନିବନ୍ଧାଦ୍ଦ୍ୱୋ ଧନ୍ୟା ହୃଦୟମିବତେ ସ୍ୱଂ ପୁରମସୌ
ସମାସାଦ୍ୟ ସ୍ୱୈରଂ ଯଦିହ ବିଳସନ୍ତୀ ନିବସତି ।
ଧ୍ରୁବଂ ପୁଣ୍ୟଭ୍ରଂଶାଦଜନି ସରଳେୟଂ ମମ ସଖୀ
ପ୍ରବେଶସ୍ତତ୍ରାଭୂତ୍ କ୍ଷଣମପି ଯଦସ୍ୟ ନ ସୁଲଭଃ । ୭୯ ।

କମାବସ୍ଥାଭୂତୈଃ ସପଦି ଯଦ୍ୱା ନୂରଫଣିନା
କ୍ଷତାପସ୍ମାରେଣ ଚ୍ୟୁତମତିରକସ୍ମାତ୍ କମପତତ୍ ।
ଇତି ବ୍ୟଗ୍ରୈରସ୍ୟାଂ ଗୁରୁଭିରଭିତଃ କାଚକରବ—
ଶ୍ରବାଦସ୍ପନ୍ଦାସ୍ୟାଂ ମୁରହର ! ବିକମ୍ପା ବିଦଧିରେ । ୮୦ ।

ନଖାନେସ୍ପୁଂ ସମ୍ପନ୍ୟକୁଶଳପଶ୍ୱପାକଲହସ୍ୱ
ନଖାନଗ୍ରୀ ସ୍ୱୈରଂ ମମ ସହଚରୀ ଚନ୍ଦ୍ରକୁହରେ ।
ଜଗନ୍ନେତ୍ର ଶ୍ରେଣୀ ମଧୁର ମଧୁସପୂଂ ନିବସତ—
ସ୍ଥିରଦ୍ୱାର୍ତ୍ତା ବାର୍ତ୍ତାମପି ତବ ସନ୍ଦେଶାଂ ନ ଲଭତେ । ୮୧ ।

ଜନାନ୍ ମିଥ୍ୟାଦେଶାନ୍ ନମତି ଭଜତେ ମାନ୍ତ୍ରିକଣାନ୍
ବିଧତ୍ତେ ଶୁଶ୍ରୂଷାମଧିକବଳନପ୍ୟୁଦୌଷଧବାଦଂ ।
ଭୂଧାଷା-ଧାଷାପ୍ତ୍ୟୈ ପରିଚରତି ଭକ୍ତ୍ୟା ଗିରିସୁତାଂ
ମମାଷା ସ୍ୱ ବ୍ୟଗ୍ରା କିମପି ଶୁଭହେତୁଂ ନ ମନୁତେ । ୮୨ ।

ପଶୂନାଂ ପାତାରଂ ଭୁଜଗରିପୁପକ୍ଷପ୍ରଣୟିନଂ
ସୁରେନ୍ଦ୍ରବର୍ହିଂସ୍ନୀଡ଼ଂ ନିବଡ଼ଘନସାର-ଦ୍ୟୁତିହରଂ ।
ସଦାଭ୍ୟର୍ଣ୍ଣେ ନନ୍ଦୀଶ୍ୱରଗିରିଭୁବୋରଙ୍ଗରସିକଂ
ଭବନ୍ତଂ କଂସାରେ ! ଭଜତି ଭବଦାପ୍ତ୍ୟୈ ମମସଖୀ । ୮୩ ।

ଭବନ୍ତଂ ସନ୍ତପ୍ତାବଦଳିତ-ତମାଳାଙ୍କୁର-ରସୈ—
ର୍ବିଲିଖ୍ୟ ଭ୍ରୂଭଙ୍ଗୀକୃତମଦନକୋଦଣ୍ଡ କଦନଂ ।
ନିଧାସ୍ୟନ୍ତ୍ରୀ କଣ୍ଠେ ତବ ନିଜ ଭୁଜାବଲ୍ଲିରମସୌ
ଧରଣ୍ୟାମ୍ମୂର୍ଚ୍ଛିନ୍ନ ଲାଞ୍ଛିତମ-ନିଟଙ୍କାଙ୍ଗୀ ବିଲୁଠତି । ୮୪ ।

କଦାଚିତ୍ ମୃଦ୍ଭେସ୍ପୁଂ ନିବଡ଼ ଭଟଧାସ୍ପୁ-ସ୍ମୃତିମଦା—
ଦମନ୍ଦାଦାମ୍ନାନଂ କଳୟତି ଭବନ୍ତଂ ମମ ସଖୀ ।
ତଥାପ୍ୟସ୍ୟବାଧାବିରହ-ଦହନା କଳ୍ପିତଧିୟୁ ।
ମୁରାରେ ଦୁଃସାଧା କ୍ଷଣମପି ନ ବାଧା ବିରମତି । ୮୫ ।

ଚେପନ

ଲସ୍ତ୍ୱା ସନ୍ତାପାନାମୁପରି ପରିମୁକ୍ତାପିରଭସା—
ସ୍ୱଦାମାମାପେଦେ ତଦପି ତବ ଚେଷ୍ଟାଂ ପ୍ରିୟସଖୀ ।
ଯଦେଷାଂ କଂସାରେ ! ଭିଦୁର-ହୃଦୟଂ ଭାମବସ୍ତୁତ
ସନ୍ତାନାଂ ମୂର୍ଦ୍ଧନ୍ୟା ଭିଦୁରହୃଦୟା ଭୂତନନ୍ଦନଂ । ୮୬ ।

ସମକ୍ଷଂ ସର୍ବେଷାଂ ସ୍ୱନ୍ତରସି ସମାଧିପ୍ରଣୟିନା—
ମିତି ଶ୍ରୁତ୍ୱା ନୂନଂ ଗୁରୁତର-ସମାଧିଂ କଳୟନ୍ତି ।
ତଦା କଂସାରାତେ ! ଭଜନ୍ତି ଯମିନାଂ ନେତ୍ରପଦବୀ
ମିତିବ୍ୟକ୍ତଂ ସଜ୍ଜୀଭବତି ଯମମାଲୋଚନ୍ତୁମପି । ୮୭ ।

ମୁରାରେ ! କାଳିନ୍ଦୀ ସଜଳଜଳଦଦର୍ପବରରୁଚେ !
ମୁକୁନ୍ଦ ! ଶ୍ରୀବୃନ୍ଦାବନମଦନ ! ବୃନ୍ଦ ରକମଣେ !
ବ୍ରଜାନନ୍ଦନ୍ନନ୍ଦୀଶ୍ୱରଦୟିତ ! ନନ୍ଦାତ୍ମଜ ! ହରେ !
ସଦେତି ସ୍ପନ୍ଦନ୍ତୀ ପରିଜନଶୁଚଂ କନ୍ଦଳୟତି । ୮୮ ।

ସମନ୍ତାଦୁତ୍ତପ୍ତସ୍ତବ-ବିରହଦାବାଗ୍ନି-ଶିଖୟା
କୃତୋଦ୍ବେଗାଃ ପଞ୍ଚାଶୁଗ ମୃଗଯୂଥବେଧବ୍ୟନ୍ତିକରୈଃ ।
ତନୂଭୂତଃ ସଦ୍ୟସ୍ତନ ବନମିଦଂ ହାସ୍ୟତି ହରେ !
ହଠାଦଦ୍ୟ ଶ୍ୱୋ ବା ମମ ସହଚରୀ ପ୍ରାଣହରିଣଃ । ୮୯ ।

ପୟୋରାଶିସ୍ତୀରଭ୍ରଷ୍ଟି ହୃମକରେରତ୍ତଂସ ମଧୁରେ
ଦଧାନେ ଦୁର୍ଭଙ୍ଗ୍ୟା ସ୍ମରଧ୍ୱଜସ୍ଥିରୂପଂ ମମ ସଖୀ ।
ହରେ ଦତ୍ତ୍ୱସ୍ତ୍ରାନ୍ତା ଭବତି ତଦମାଂ କଂ ପ୍ରଭବତି
ସ୍ମରେ ହନ୍ତୁଂ କନ୍ତୁ ବ୍ୟଥୟନ୍ତି ଭବାନେବ କୁହୁକୀ । ୯୦ ।

ନ ଜାନୀଷେ ଧ୍ରୁବଂ ପଶୁପରମଣୀନାଂ ଯଦୁମଣେ !
ନ ଜାନୀମଃ କସ୍ମାତ୍ତଦପି ଛବମାପ୍ୟା ରଚୟନ୍ତି ।
ସମନ୍ତାଦଧାମ୍ନଂ ଯଦିହ ପବନବ୍ୟାଧିରଳପା—
ଦଳାଦସ୍ୟାସ୍ତେନ ବ୍ୟସନକୁଳମେବ ଦ୍ୱିଗୁଣିତଂ । ୯୧ ।

ଗୁରୋରନ୍ତେବାସୀ ସ ଭବତି ଯଦୂନାଂ ସଚିବତାଂ
ସଖୀପୁଂ କାଳିନ୍ଦୀ କଳ ଭବତି କାଳସ୍ୟ ଭଗିନୀ ।
ଭବେଦନ୍ୟଃ କୋବା ନରପତିପୁରେ ମତ୍ ପରିଚୟୋ
ଦଶାମସ୍ୟାଃ ଶଂସନ୍ ଯଦୁତିଳକ ! ଯସ୍ତ୍ୱାମନୁନୟେତ୍ । ୯୨ ।

ବଶୀଷ୍ଟାଙ୍ଗୀ ମନ୍ଦବଂଶବିଲୁଠନାଦୁତ୍କଳକସ୍ତା
ପୟାତାଂ ଭୂପୃଷ୍ୟା ସତତମପରାଗବ୍ୟନ୍ତକରାଂ ।
ପରିଧ୍ୱସ୍ତାମୋଦାଂ ବିରମିତ ସମସ୍ତାଳି କୁତୁକାଂ
ବିଧୋ ! ପାଦସ୍ପର୍ଶାଦପି ସୁଖୟ ରାଧା-କୁମୁଦିନୀଂ । ୯୩ ।

ବିପତ୍ତିଭ୍ୟଃ ପ୍ରାଣାନ୍ କଥମପି ଭବତ୍-ସଙ୍ଗମ ସୁଖ—
ସ୍ପୃହାଧୀନା ଶୌରେ ! ମମ ସହଚରୀ ରକ୍ଷିତବତୀ ।
ଅତିକ୍ରାନ୍ତେ ସଂପ୍ରତ୍ୟବଧିଦିବସେ ଜୀବନବିଧୌ
ହତାଶା ନିଃଶଙ୍କଂ ବିଚରତି ଦୃଶୌ ଛଜ ମୁକୁନ୍ଦେ ।

ପ୍ରତୀକାରାରମ୍ଭଶ୍ଲଥମତିଭିରୁଦ୍ୟତ୍ ପରିଣତେ—
ର୍ବିମୁକ୍ତାୟା ବ୍ୟକ୍ତ ସ୍ମରକଦନଭାଜଃ ପରିଜନୈଃ ।
ଅମୁଞ୍ଚନ୍ତୀ ସଙ୍ଗଂ କୁବଳୟଦୃଶଃ କେବଳମସୌ
ବଳାଦଦ୍ୟ ପ୍ରାଣାନବତି ଭବଦାଶା ସହଚରୀ । ୯୫ ।

ଅୟେ ରାସକ୍ରୀଡ଼ାରସିକ ! ମମ ସଖ୍ୟାଂ ନବନବା—
ପୁରାବଦ୍ଧା ଯେନ ପ୍ରଣୟଲହରୀ ହନ୍ତଗହନା ।
ସ ଚେନ୍ମୁକ୍ତାପେକ୍ଷସ୍ତ୍ୱମସି ଧିଗିମାଂ ତୂଳଶକଳଂ
ଯଦେତସ୍ୟା ନାସାବହିତମିଦମଦ୍ୟାପି ଚଳତି । ୯୬ ।

ମୁକୁନ୍ଦ ! ଭ୍ରାନ୍ତାକ୍ଷୀ କମପି ଯଦସଙ୍କଲ୍ପିତଶତଂ
ବିଧତ୍ତେ ତଦ୍‌ବକ୍ତୁଂ ଜଗତି ମନୁଜଃ କଃ ପ୍ରଭବତି ।
କଦାଚିତ୍ କଲ୍ୟାଣୀ ବିଜୟତି ଯଦୁତ୍କଣ୍ଠିତମତି—
ସ୍ତଦାଖ୍ୟାମି ସ୍ୱାମିନ୍ ! ଶମସୁ ମକରୋତ୍ତଂସ-ପଦବୀଂ । ୯୭ ।

ଅଦ୍ଧ୍ୱକ୍ରୋଽପି ପ୍ରେମାମଧ୍ୱି ମୃତଶପୋର୍ଯଃ ସଖିପୁର
ପରଂ ଧର୍ମ୍ୟାପେକ୍ଷାମମିତଦବଲମ୍ବନ୍ନଗଣୟତ୍ ।
ତଦେଦାନୀଂ ହା ଧିକ୍ ସମଜନି ତଟସ୍ଥଃ ସ୍ଫୁଟମଦ୍ୟଂ
ଭଜେ ଲଜ୍ଜାଂ ଯେନ କ୍ଷଣମପି ପୁନର୍ନାବିକୃମପି । ୯୮ ।

ଗଶାସ୍ୟାନ୍ତେ ପ୍ରେମାଙ୍ଗୁପ୍ରି ପରମିତି ସ୍ନେହଲଦୂତା
ନ ଜାବିଷ୍ୟାମିତି ପ୍ରଣୟଗରିମାଖ୍ୟାପନବିଧିଃ ।
କଥଂ ନାୟାସୀତି ସ୍ମରଣ ପରିପାଟୀ-ପ୍ରକଟନଂ
ହରୌ ସନ୍ଦେଶାୟ ପ୍ରିୟସଖି ! ନମେ ବାଗବସରଃ । ୯୯ ।

ଅମୀକୁଞ୍ଜାଃ ପୂର୍ବାମମଳ ଦଧିରେ କାମପିମୁଦଂ
ଦ୍ରୁମାଣୀୟଂ ଚେତଃ ସଖିନ କତିଶେ ନନ୍ଦିତବତୀ ।
ଇଦାନୀଂ ପଶ୍ୟୈତେ ଯୁଗପଦୁପତାପଂ ବିଦଧତେ
ହରୌ ମୁକ୍ତାପେକ୍ଷେ ଭଜତି ନ ହି କୋ ବା ବିମୁଖତାଂ । ୧୦୦

---

ମୁଦ୍ରାକର—ଶ୍ରୀଦିବାକର ମିଶ୍ର, ଗୋସ୍ୱାମି ପ୍ରେସ, କଟକ-୨



# ଦରଦୀକବି

ଜନ୍ମ—୩୧-୧-୧୯୩୦—ଜନ୍ମସ୍ଥାନ-କଳନାଦିନୀ 'ବିରୂପା' ତଟବର୍ତ୍ତୀ ଐତିହାସିକ ପୀଠ ଚଉଦ୍ୱାର, ଜି: କଟକ—ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ କରଙ୍କର ବାତ୍ସଲ୍ୟ ସ୍ନେହରେ ଲାଳିତପାଳିତ—ପିତାମହଙ୍କର ମୃତ୍ୟୁ ପରେ ଦାରିଦ୍ର୍ୟର ତୀବ୍ର କଷାଘାତରେ କ୍ଲିଷ୍ଟ ଜୀବନ ଜର୍ଜରିତ—ଯୁବତୀପ୍ରିୟାର ସାମୟିକ ବିରହରେ ହୃଦୟର ପ୍ରେମ-ଫଲ୍‌ଗୁ ବିରହ-ବାନ୍ଧବୀ କବିତାବଳୀ ମାଧ୍ୟମରେ ପ୍ରବାହିତ—ସମଗ୍ର ଭାରତ, ସିଂହଳ, ଭୂସ୍ୱର୍ଗ କାଶ୍ମୀର ଓ ନେପାଳ ପରିଭ୍ରମଣ ।

ପ୍ରକାଶିତ ପୁସ୍ତକାବଳୀ:- ବିରହ-ବାନ୍ଧବୀ, ମିଳନ-ମାଧୁରୀ, ରତ୍ନରେଣୁ, ପଲ୍ଲୀ-ପ୍ରୀତି, ଉପହାର, ଗୀତ-ନିର୍ଝରିଣୀ, ସତୀର ଶକ୍ତି, ସଟୀକ ଯମକରାଜ ଚଉତିଶା, ଗୀତଗଣିତ, ଅଞ୍ଜଳି, ମଣିରତ୍ନମାଳା, ଉଳଉଣ୍ଡଳ ଓ ହଂସଦୂତ ।

ମୁଦ୍ରଣ ପ୍ରତୀକ୍ଷାରେ:—ପଥ ଓ ପଥିକ, ନଳୋଦୟ ଓ କଳ୍ପନା କୁଞ୍ଜେ କବି